# ଭକ୍ତ ଜଗବନ୍ଧୁ

—ଲେଖକ—
ଶ୍ରୀ ମନୋରଞ୍ଜନ ଦାସ

—ପ୍ରକାଶକ—
ଶ୍ରୀ ଦାଶରଥି ଦାସ

ପ୍ରଥମ ମୁଦ୍ରଣ—୧୯୫୧

—ପ୍ରାପ୍ତିସ୍ଥାନ—
ଦାଶରଥି ପୁସ୍ତକାଳୟ
କଟକ—୨

ମୂଲ୍ୟ ୧।। ଏକଟଙ୍କା ଚାରିଅଣା ମାତ୍ର

ବାପା ଓ ବୋଉଙ୍କର

ଚରଣମଳରେ



# ପ୍ରସ୍ତୁ ପ୍ରବେଶ

ଏହି ନାଟକଟି "ବିଦ୍ରୋହୀ ଜଗବନ୍ଧୁ" ଶିରୋନାମାରେ ୧୯୪୯ ମସିହା ଜୁନ୍ ସାତ ତାରିଖଠାରୁ ବହୁ ମାସ ଧରି କଟକ ଅନ୍ନପୂର୍ଣ୍ଣା ରଂଗମଞ୍ଚରେ ଅଭିନୀତ ହୋଇଥିଲା ଏବଂ ସେହି ସମୟଠାରୁ ଏହା ଓଡ଼ିଶାର ବିଭିନ୍ନ ସ୍ଥାନରେ ଉକ୍ତ ଶିରୋନାମାରେ ଅଭିନୀତ ହୋଇଛି ଓ ହେଉଛି । ବର୍ତ୍ତମାନ ଏହି ପୁସ୍ତକ ପ୍ରକାଶ ସମୟରେ ନାଟକର ନାମ "ବିଦ୍ରୋହୀ ଜଗବନ୍ଧୁ" ବଦଳରେ "ବକ୍ସି ଜଗବନ୍ଧୁ" ରଖାଗଲା । ଏପରି ପରିବର୍ତ୍ତନର କାରଣ ହେଉଛି...ଯେଉଁ ବରେଣ୍ୟ ବ୍ୟକ୍ତିଙ୍କର ଜୀବନର ଅଂଶ ବିଶେଷ ନାଟକରେ ପରିସ୍ଫୁଟ କରିବାର ଚେଷ୍ଟା କରାଯାଇଛି ସେ ଉତ୍କଳର ସର୍ବତ୍ର ବକ୍ସି ଜଗବନ୍ଧୁ ନାମରେ ସୁପରିଚିତ । ତେଣୁ ନାଟକର ନାମ 'ବକ୍ସି ଜଗବନ୍ଧୁ' ରଖାଯିବା ଅଧିକ ଯୁକ୍ତିଯୁକ୍ତ ଓ ଯଥାର୍ଥ ।

ଏହି ପୁସ୍ତକର ରଚନା ସମୟରେ ଶ୍ରୀଯୁକ୍ତା କୁସୁମକୁମାରୀ, ଶ୍ରୀମାନ୍ ଚିତ୍ତରଂଜନ ଓ ଶ୍ରୀଯୁକ୍ତ ନିତ୍ୟାନନ୍ଦ ପାଲିତ୍ ମଣ୍ଡଳ ଉତ୍ସାହିତ ଓ ବିଭିନ୍ନ ଦିଗରୁ ବହୁ ସାହାଯ୍ୟ କରିଛନ୍ତି— ସେମାନଙ୍କୁ ମୋର ଆନ୍ତରିକତା ଜଣାଇବା ଛଡ଼ା ଅଧିକ ବା ଆଉ କଣ ଦେଇ ପାରେ ?

ଅନ୍ନପୂର୍ଣ୍ଣା ରଂଗ ମଞ୍ଚରେ ନାଟକଟିକୁ ବିଶେଷ ସଫଳତାର ସହିତ ରୂପାୟିତ କରିବା ପାଇଁ ବନ୍ଧୁ ଓ ନୃତ୍ୟ-ନିର୍ଦ୍ଦେଶକ ମିତ୍ରର ସାମୁଏଲ ସାହୁ ( ବାବୁ ) ଯେଉଁ ସାହାଯ୍ୟ ସହଯୋଗ ଦେଇଛନ୍ତି

ତାହା ଭୁଲିବାର ନୁହେଁ । ସେଥିପାଇଁ ତାଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛି ।

ନାଟକର ସମସ୍ତ ସଙ୍ଗୀତ ରଚନା କରିଛନ୍ତି ବନ୍ଧୁ ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ, ତାଙ୍କୁ ମୋର ଧନ୍ୟବାଦ ।

ନାଟକଟି ପ୍ରେସ୍‌କୁ ଦିବା ପୂର୍ବରୁ ତତ୍ ସଂକ୍ରାନ୍ତୀୟ କାର୍ଯ୍ୟରେ କୁଜଙ୍ଗ ହାଇସ୍କୁଲ ଛାତ୍ର ଶ୍ରୀମାନ ବିପିନବିହାରୀ ମହାନ୍ତି ମତେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି । ନାଟକଟିର କେତେକ ପ୍ରୁଫ୍ ସଂଶୋଧନର ଦାୟିତ୍ୱ ମୋର ଗୁରୁଦେବ, କୁଜଙ୍ଗ ହାଇସ୍କୁଲର ଶିକ୍ଷକ ଶ୍ରୀ ବାମଦେବ ମିଶ୍ର ଆନନ୍ଦର ସହିତ ବହନ କରିଥିବାରୁ ମୁଁ ତାଙ୍କ ପ୍ରତି କୃତଜ୍ଞତା ଜଣାଉଅଛି ।

ଷଡ଼ଙ୍ଗସେନର ପୁସ୍ତକ ପ୍ରକାଶକର କର୍ତ୍ତା ଅଚ୍ୟୁତ-ଦମିତ-ନାସାତ୍ ବିଶେଷ ସାହାଯ୍ୟ କରିଥିବାରୁ ତାଙ୍କ ନିକଟରେ କୃତଜ୍ଞତା ଅର୍ପଣ କରୁଛି ।

କୁଜଙ୍ଗ
୬ ତାରିଖ ମେ ୧୯୫୧ } ମନୋରଞ୍ଜନ ଦାସ

## ଚରିତ୍ର—

ମୁକୁନ୍ଦ ଦେବ ... ଓଡ଼ିଶାର ଗଜପତି
ବକ୍ସି ଜଗବନ୍ଧୁ ... ଗଜପତିଙ୍କର ବକ୍ସି
ଜୟକୃଷ୍ଣ ... ଗଜପତିଙ୍କର ମନ୍ତ୍ରୀ
ଇନ୍ଦ୍ର କବାଟ
କରୁଣାକର
ମଦନ } ଖୋର୍ଦ୍ଧାର ପାଇକ
ଘନ
ବରଜୁ
ସୁଆର ( ମେଳରେ ଯୋଗ-ଦେଇଥିବା ପୁରୀର ସୁଆର )

କର୍ଣ୍ଣେଲ ହାର୍କୋର୍ଟ ... ଇଂରେଜ କର୍ଣ୍ଣେଲ
କ୍ୟାପ୍ଟେନ ଥୋମାସ ... ,, କ୍ୟାପ୍ଟେନ
ମେଜର ଫ୍ଲେଚର ... ,, ମେଜର
ଦେବାନ କୃଷ୍ଣଚନ୍ଦ୍ର ... ଇଂରେଜଙ୍କର ଦେବାନ
ଚରଣ ପଟ୍ଟନାୟକ ... ,, ତହସିଲଦାର
ଫତେ ମହମ୍ମଦ ... ମାଲୁଦର ଜମିଦାର
କସ୍ତୁରି ... ପାଇକ କନ୍ୟା
ରାଣୀ ... ଗଜପତିଙ୍କର ରାଣୀ
ସାବିତ୍ରୀ ... ପାଇକ ସ୍ତ୍ରୀ
ବୁଢ଼ୀ ...
ପାଇକଝିଅ,
ନର୍ତ୍ତକୀ
ସିପାହୀ, ଖୋର୍ଦ୍ଧାର ଅଧିବାସୀଗଣ,

# ବକ୍ସି ଜଗବନ୍ଧୁ

## ପ୍ରଥମ ଅଙ୍କ

### ୧ମ ଦୃଶ୍ୟ

[ ରାତିର ଘନ ଅନ୍ଧକାର ମଧ୍ୟରେ, ଏକ ବିରାଟ ପ୍ରାନ୍ତରର ମଧ୍ୟ ସ୍ଥଳରେ, ଖୋର୍ଦ୍ଧାର ପାଇକମାନେ ସେମାନଙ୍କର ନେତା ବକ୍ସି ଜଗବନ୍ଧୁଙ୍କୁ କେନ୍ଦ୍ରକରି ଠିଆ ହୋଇଛନ୍ତି । ଅଶରୀର ବାଣୀପରି ବାୟୁ ଚଞ୍ଚଳ କରି ଶୁଣା ଯାଉଛି ଇତିହାସର ଗୋଟିଏ କରୁଣ ପୃଷ୍ଠା ...... ]

......"୧୮୦୩ ସାଲ । ରାଜ୍ୟ ଲୋଲୁପ ଫିରିଙ୍ଗି ବେପାରୀ ଇଷ୍ଟଇଣ୍ଡିଆ କମ୍ପାନୀର ଆଖି ସେତେବେଳେ ଖୋଜି ବୁଲୁଥାଏ ରାଜ୍ୟ ବିସ୍ତାରର ସୁଯୋଗ ... ଉତ୍ତରରେ ବଙ୍ଗଳା, ଦକ୍ଷିଣରେ ମାନ୍ଦ୍ରାଜ ହୋଇ ସାରିଥାଏ ଇଂରେଜର କରାୟତ୍ତ । କିନ୍ତୁ ଓଡ଼ିଶା ... ? ଶହ ଶହ ବର୍ଷର ବର୍ଗୀ ଅତ୍ୟାଚାର ପରେ ମଧ୍ୟ ଓଡ଼ିଶାର ମେରୁଦଣ୍ଡ ଥାଏ ଜୀବନ୍ତ,—ଅଟଳ । କିନ୍ତୁ ଚତୁର ଫିରିଙ୍ଗିର ଦଳ, ମରହଟ୍ଟାମାନଙ୍କ ସଙ୍ଗେ ଦେବଗାଁଓ ସନ୍ଧି କରି ଓଡ଼ିଶା ଦଖଲ କରିବା ଚେଷ୍ଟାରେ ତ୍ରୁଟି କରି ନ ଥାନ୍ତି । ସେଇ ଫିରିଙ୍ଗି ଅଭିଯାନର ନେତୃତ୍ୱ ନେଇଥାନ୍ତି କର୍ଣ୍ଣେଲ ହାର୍କୋର୍ଟ

ଶଲିତା ବାଟେ ପୁରୀ ଅଧିକାର କରିବା ତାଙ୍କର ଲକ୍ଷ୍ୟ । କିନ୍ତୁ କିପରି ସେ ପୁରୀ ଅଧିକାର କରିବେ ? ଏତେ ବଡ଼ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ହୃତ୍‌ପିଣ୍ଡ ଉପରେ ପାଦ ପକାଇବାକୁ କିଏ ତାଙ୍କୁ ସାହାଯ୍ୟ କରିବ ? ......ସାହାଯ୍ୟର ଅଭାବ ହେଲାନି । ଅଣ୍ଡାଳୁସି ଜମିର କାଟେ । ଅର୍ଥ ଲାଳସାରେ ମାଲ୍‌ଦାର ପତେ ମହମ୍ମଦ ତାଙ୍କୁ ସାହାଯ୍ୟ କଲେ......ଆଜି ଶେଷରେ ହାର୍କୋର୍ଟ ପୁରୀର ଉପକୂଳରେ ଓଡ଼ିଶା ଦଖଲ ପାଇଁ ଆସି ଡେରିଲେ ତାଙ୍କର ଡେରା । ସେତେବେଳକୁ ଓଡ଼ିଶାର ଗଜପତି ହେଉଛନ୍ତି ଦ୍ୱିତୀୟ ମୁକୁନ୍ଦଦେବ । ପାରିପାର୍ଶ୍ୱିକ ପରିସ୍ଥିତି ଗଜପତିଙ୍କୁ କରି ପକାଇ ଥାଏ ଦୁର୍ବଳ । ଜନରବ, ସେ ହୁଏତ ଫିରଙ୍ଗି ସାଥିରେ ସନ୍ଧି କରିବେ—

[ ହଠାତ୍ ସେଇ ଶବ୍ଦ ବନ୍ଦ ହୋଇଗଲା ଓ ପ୍ରାନ୍ତର ଆଲୋକରେ ଉଦ୍‌ଭାସିତ ହୋଇ ଉଠିଲା । ଶୁଣାଗଲା ବକ୍‌ସିଙ୍କ ନିକଟରେ ପାଇକମାନଙ୍କର ଅଭିଯୋଗ ]

ସଦନ—ଯଦି ଫିରଙ୍ଗି ସହିତ ସନ୍ଧି କଲେ ଆମେ ବିଦ୍ରୋହ କରିବୁ ।

ସମସ୍ତେ—ଆମେ ବିଦ୍ରୋହ କରିବୁ !
ଆମେ ବିଦ୍ରୋହ କରିବୁ !
ଆମେ ବିଦ୍ରୋହ କରିବୁ !

ବକ୍‌ସି—ବିଦ୍ରୋହ । ବିଦ୍ରୋହ !! ହଁ ସେଇ ବିଦ୍ରୋହର କଥା ମୁଁ କହୁଛି । ତୁମେମାନେ ମୋଗଲର ଅତ୍ୟାଚାର ସହ୍ୟ କରି ନାହଁ .....ବର୍ଗୀ ଲୁଣ୍ଠନର ପ୍ରତିବାଦ କରି ଭରବାସ ହୋଇ ଉଠିଛି ତୁମମାନଙ୍କର ସକଳ । ବେପାରୀ ଫିରିଙ୍ଗିର ଆଗମନରେ ତୁମେମାନେ ବୃଦ୍ଧ ବିଦ୍ରୋହ କରିବାକୁ ଯେପରି

ତୁମମାନଙ୍କର ବିଦ୍ରୋହର ସ୍ଫୁଲିଙ୍ଗରେ, ଫିରିଙ୍ଗିର ଅଭିଯାନ ପରାଜୟରେ ପରିଣତ ହେବ । ବିଦ୍ରୋହ, ବିପ୍ଳବ...... ତୁମମାନଙ୍କର ବଂଶଗତ ଅଧିକାର । ପାଇକର ବକ୍ସି ହୋଇ ତୁମମାନଙ୍କୁ ସେ ପଥରୁ ମୁଁ ବିଚ୍ୟୁତ କରାଇ ନାହିଁ । କିନ୍ତୁ...

ବୁଦ୍ଧସା—କିନ୍ତୁ ଆଜ କଣ ସାନ୍ତେ ? ସେଇ ରାଜାଙ୍କ କଥାତ ?

ବକ୍ସି—ହଁ ଜନରବ ସତ୍ୟ ହୁଏ...

ଘନ—ସତ ହବ ସାନ୍ତେ ! ରାଜା ସନ୍ଧି କରିବେ ଫିରିଙ୍ଗି ସାଙ୍ଗରେ ? କେଉଁ ଡର ନାଇଁ, ସାତ ଦରିଅ ସେପାରିରୁ ବେପାରୀ ଆସି ଆମ ଭୂଇଁରେ ପଶିଯିବେ । ଆମେ ସେକଥା କେବେ ବରଦାସ୍ତ କରି ପାରିବୁ ନାହିଁ ।

ପଦନ—ଆପଣ କଣ ଜାଣି ନାହାନ୍ତି ବକ୍ସି ସାନ୍ତେ, ମୋଗଲ ଗଲେ, ମରହଟ୍ଟା ଆସିଲେ......ଆମେ ମୋଗଲର ଅତ୍ୟାଚାର ସହିଲୁ, ବର୍ଗୀର ଲୁଣ୍ଠନ ସହିଲୁ । ତଥାପି ଆମ ଭିତରେ ଯେଉଁ ତେଜ ଅଛି ଶକ୍ତି ଅଛି ସାନ୍ତେ ତାକୁ ଆମେ ପର ପାଦତଳେ ବିକି ଦେବୁ ନାହିଁ ।

ବରଜୁ—କାହିଁକି ! ଆପଣ କୁହନ୍ତୁ ବକ୍ସି ସାନ୍ତେ, ରାଜା କାହିଁକି ସନ୍ଧି କରିବେ ? ତାର ବକ୍ସି କଣ ମରିଗଲେଣି । ତାର ପାଇକ କଣ ମରିଗଲେଣି । ଆମେ ଜବାବ ଦେଉଛୁ ଆପଣ ଏ ସମ୍ବନ୍ଧରେ କେବେ ରାଜି ହୁଅନ୍ତୁ ନାହିଁ ।......ତା ହେଲେ ଆମେ ବିଦ୍ରୋହ କରିବୁ......

ବକ୍ସି—ବିଦ୍ରୋହ କରିବ ? କାହା ବିରୋଧରେ ବିଦ୍ରୋହ କରିବ ?

ବରଜୁ—ଅନ୍ୟାୟ ଅତ୍ୟାଚାର ବିରୋଧରେ ବିଦ୍ରୋହ କରିବୁ...

ସଦନ—ରାଜାର ସନ୍ଧି ବିରୋଧରେ ବିଦ୍ରୋହ କରିବୁ ।

ବକ୍ସି—କିଏ ଏ ବିଦ୍ରୋହର ନେତୃତ୍ୱ ନେବ ?

ମଦନ—କିଏ ? ଜାଣିଚ, ଖରଧନ ଧରି ଯିଏ ନେତୃତ୍ୱ ନେଇ ଅସିଛନ୍ତି ସେଇ ବକ୍ସି ସାନ୍ତେ ।

ବକ୍ସି—( ଅବସାଦରେ ଝାଉଁଳି ପଡ଼ିଲେ ) ମୁଁ ଜାଣିଛି ତୁମମାନଙ୍କ ଅନ୍ତରର ବ୍ୟଥା……କିନ୍ତୁ ମୁଁ ବି ଅନ୍ଧ ନୁହେଁ । ଗଜପତିଙ୍କର ପାରିପାର୍ଶ୍ୱିକ ପରିସ୍ଥିତିର ପର୍ଯ୍ୟାଲୋଚନା ପାଇଁ ମତେ ସୁଯୋଗ ଦିଅ ।

ଘନ—ଆମେ ଗଜପତିଙ୍କ ପରିସ୍ଥିତି ଜାଣିବାକୁ ଚାହୁଁନାହୁଁ । ଆମେ ଖାଲି ଚାହୁଁ ବିଦ୍ରୋହ, ବିଦ୍ରୋହ ।

ସମସ୍ତେ—ବିଦ୍ରୋହର ଜୟ ହେଉ । ବକ୍ସି ସାନ୍ତଙ୍କର ଜୟ ହେଉ !

ବକ୍ସି—ବିଚାର କର, ବିଚାର କର…… । ଉଚ୍ଛୃଙ୍ଖଳତାରେ ଏ ସବୁର ମୀମାଂସା ହୋଇ ପାରେ ନାଁ, ଯାଅ ତୁମେମାନେ ଅପେକ୍ଷା କର । ମନ୍ତ୍ରୀଙ୍କ ସଙ୍ଗେ ପରାମର୍ଶ କରିବାକୁ ମତେ ଥରେ ସୁଯୋଗ ଦିଅ…… । ଯାଅ ତୁମେ ମାନେ ।

( ବକ୍ସି ଚାଲିଗଲେ )

ଚରଣ—ଦେଖିଲ, ମୁଁ ସତ କହୁଥିଲି ବକ୍ସି ସାନ୍ତେ କେବେ ରାଜି ହେବେ ନାହିଁ ।

ମଦନ—ସେ ରାଜି ହୁଅନ୍ତୁ ବା ନ ହୁଅନ୍ତୁ……

ଅନ୍ୟମାନେ—ଆମେ ବିଦ୍ରୋହ କରିବୁ ( ଏମିତି ଉତ୍ତେଜନା ଭିତରେ ସେମାନେ ପ୍ରାନ୍ତର ଛାଡ଼ି ଗୋଟି ଗୋଟି ହୋଇ ଯିବାକୁ ଆରମ୍ଭ କଲେ )

## ୨ୟ ଦୃଶ୍ୟ

[ ପୂର୍ବ ସମୁଦ୍ର ତଟସ୍ଥ ଇଂରେଜ ଶିବିରର ନଗୋଟିଏ କକ୍ଷ । ସାଜସଜ୍ଜା ତାକ ସବୁଜ ଅଥଚ ଉଗ୍ର ଝପଲ । କର୍ଣ୍ଣେଲ ହାର୍କୋର୍ଟ କକ୍ଷ ମଧ୍ୟରେ ପଦଗ୍ଭରଣ କରୁଥିଲେ । ହାତରେ ତାଙ୍କର ଥିଲା ଏକ ଦଲିଲ । ପୋଷାକ ଅସ୍ୱାଦଣ ଶତାବ୍ଦୀର ଶେଷ ଭାଗର । କକ୍ଷର ଅନ୍ୟ ପ୍ରାନ୍ତରେ ବସିଥିଲେ ଫତେ ମହମ୍ମଦ । ପାଶରେ ଗୁଡ଼ାଖୁର ନଳ । ଜାନୁରେ ଝୁଲୁଥିବା ମାନଣଙ୍କୁ କର୍ଣ୍ଣେଲ ହାର୍କୋର୍ଟ ତନ୍ମୟ ହୋଇ ଦେଖି ସାରିବା ପରେ ]

ହାର୍କୋର୍ଟ—Captain Thomas । ( ଥୋମାସ ପ୍ରଶି .ଅସି ସାମରିକ ପଦ୍ଧତିରେ ଅଭିବାଦନ ଜଣାଇଲେ )

ହାର୍କୋର୍ଟ—Rule Britania Rule ! ( ଥୋମାସ ଗ୍ଭଲିଗଲେ । ସଙ୍ଗେ ସଙ୍ଗେ ଅର୍କେଷ୍ଟ୍ରାରେ ଶୁଣାଗଲା "Rule Britania Rule" ହାର୍କୋର୍ଟ ଫେରିବା ପାଶରେ ଟିକେ ମୁଗ୍ଧ ହୋଇ ଶୁଣିଲେ । ତା ପରେ ଉତ୍‌ଫୁଲ୍ଲ ହୋଇ )

ହାର୍କୋର୍ଟ—ଫତେ ମହମ୍ମଦ—I mean Khan Saheb.

ଫତେ ମହମ୍ମଦ—( ଉଠି କୁର୍ଣ୍ଣିସ କରି ) ଜନାବ ।

ହାର୍କୋର୍ଟ—No, not Janab, not Janab, say Saheb; Simply Saheb.

ଫତେ—ଜନାବ ସାହେବ,

ହାର୍କୋର୍ଟ—No no not Janab Saheb

ଫତେ—ତବ ଅଉର କ୍ୟା ସାହେବ ? ଅଚ୍ଛା ଏସିହି ବୋଲତା, କାହାଁ ସାହା !

ଚାର୍ଣ୍ଣୋକ—( ଅଙ୍ଗୁଳି ବକ୍ର ଦେଖାଇ ) No not Jahapana, Janab Saheb—We are English, we are not your Badasaha. ( କିଛି ସମୟ ଚୁପ ରହି ) Captain Thomas ( ଥୋମାସ ଉଠି ଅସିଲେ ) Yes Captain, explain him that he will call us only Saheb.

ଥୋମାସ—ଖାଁ ସାହେବ, ଆପ୍ ହାମ ଲୋଗୋଁକୁ ସିରଫ୍ ସାହେବ ବୋଲିଏ—

ଫତେ—ଜି ସାହେବ ।

ଚାର୍ଣ୍ଣୋକ—Good. Now he fallows. Captain he is to loyal.

ଫତେ—( ମୁଣ୍ଡ ଅବନତ କରି ) କ୍ୟା ସାହେବ ?

ଥୋମାସ—ଆପ୍ ବହୁତ୍ ଅଚ୍ଛା ଆଦମୀ ହୈ—ହମକୁ ବହୁତ ଲଏଲ୍ ଲଗତା ।

ଫତେ—କଇ ?

ଥୋମାସ—ପସନ୍ଦ ଲଗତା ହୈ ।

ଫତେ—ପସନ୍ଦ ? ଜରୁର ।

ଥୋମାସ—He says he is too loyal.

ଚାର୍ଣ୍ଣୋକ—And for that he has helped us—He has acted as our pilot,

ଫତେ—କ୍ୟା ସାହେବ, ହଜୁର୍ ମେଁ କହୂଏ .........

ଥୋମାସ—କୁଛ ନେହି, କୁଛ ନେହି-ହାମାରା ବଢ଼ିଆ ବାତ୍

ଚାର୍ଣ୍ଣୋକ—Khan saheb

ଫତେ—( ପୁଣ କୁର୍ଣ୍ଣିସ କରି ) ସାହେବ !

ହାର୍କୋଟ—Why so much Salams ?

ଥୋମାସ—ଖାଁ ସାହେବ ଅତ୍ ଏତ୍‌ନେ ଦଫେ କୁର୍ଣ୍ଣିଶ ମତ୍ କରଏ ।

ଫତେ—( କୁର୍ଣ୍ଣିଶ କରି ) ଜୀ ସାହେବ ।

ହାର୍କୋଟ—Khan Saheb, See our army (ଫତେ ମହମ୍ମଦ କିଛି ବୁଝି ନ ପାରି ନିର୍ବୋଧ ପରି ଚାହିଁଲେ )

ଥୋମାସ—ଦେଖିଏ ହାମରା ବ୍ରାଇଟ ଫଜଜକୁ ଦେଖିଏ ... !
I mean ଗୋରା ଫଜ୍‌ଜକୁ ଦେଖିଏ । ... ଓ ଲୋଗୋ ସ୍ୟାରେଣ୍ଡ୍ କରନେ ହୈ ।
( ଫତେ ମହମ୍ମଦ ଏକଦାରେ ଚାହିଁଲେ । ମୁହଁରେ ବୁଦ୍ଧିର ହସ )

ଫତେ—ଏ ଇନ୍ତେଜାମ କବ୍ ହୋଗେ ? ଫିର୍ କିଧର ଜାନା ହୈ ?
ହାଁ, ସାହେବ୍ ନକ୍‌ସା ତ ବିଲକୁଲ ଠିକ୍ ହୈ—ତମାମ ଓଡ଼ିଶାକା·· ...

ଥୋମାସ—Yes colonel, what is our next step ?

ହାର୍କୋଟ—I know not yet······

ଥୋମାସ—Then······

ହାର୍କୋଟ—( କାଗଜ କାଢ଼ି ଖୋଲି ) Court of Director and Govt. of Bengal orders that the army must be always ready.

ଥୋମାସ—Yes ( କିଛି ସମୟ ନୀରବତା ପରେ ) ଅପ୍‌କା ରଜାକା ପାଶ୍ ଖବର ଠିକ୍ ପହୁଞ୍ଚଗିୟା ?

ଫତେ—ହାଁ ସାହେବ । ମୈଁ ଉଦକା ଇନ୍ତେଜାମ କରଦିଆ ।

ଥୋମାସ—ଦେଖିଏ ଜନ୍‌ଦି ସାଥ ପହୁଲେ ମୁମକ ଫଏସଲା ହୋନା ଚାହିଏ······ଇସକାବାଦ······

ଫତେ—ମେରା ମାମଲା ? ଆପନେ ଲଢ଼ାଈ ନାଁ… ମୁଝେ ମାଲୁଦବା ଲାଗୁଛିସ୍…..

ଥୋମାସ—He says—

ହାର୍କୋଟ—Yes Malud, I understand, say, his case is under active consideration of the Company's Govt.

ଥୋମାସ—ଅପକୋ, ଆପକା ମେହେନ୍‌ତକା ମୁନାଫା, ଜରୁର ମିଲ ଯାଏଗା ।

ଫତେ—( କୁର୍ଣ୍ଣିସ କରି ) ଆପକା ମେହେରବାନି ସାହେବ ।

( ଜଣେ ଗୋରା ସିପାହୀ ପଶି ଆସି… )

ସିପାହୀ—Some body from the palace.

ଫତେ—କ୍ୟା ?

ଥୋମାସ—ନବାବ ସେ…

ହାର୍କୋଟ—Thomas !

ଥୋମାସ—( ଅଭିଳାଷ ବୁଝିପାରି ) Yes Sir.

( ସେ ପଦାକୁ ବାହାରି ଗଲେ )

ଫତେ—ସାହେବ !

ହାର୍କୋଟ—Yes—Yes.

ଫତେ—ଦେଖିଏ ସାହେବ ରାଜା ଅଭି ଆୟେଙ୍ଗେ, ମେରା ବଦନା ଠିକ୍ ନେହିଁ ।

ହାର୍କୋଟ—What ? ( ସେ କଥା ବୁଝିପାରିଲେ ନାହିଁ । ଫତେ-ମହମ୍ମଦ ଅଭିନୟ କରି ବୁଝାଇ ଦେବାରୁ ସେ ପଦାକୁ ବାହାରି ଯିବାକୁ ଚାହାନ୍ତି )

ହାର୍କୋର୍ଟ—Yes. ( ଫତେହ ମହମ୍ମଦ ଚାଲିଗଲେ । ଅଳ୍ପସମୟ ପରେ ପଶି ଆସିଲେ ଥୋମାସ, । ଅତି ଦୀର୍ଘକାୟ—ବକ୍ସି ଜଗବନ୍ଧୁ । ଅଳ୍ପ କ୍ଷୀଣକାୟ ରାଜଗୁରୁ ଜୟକୃଷ୍ଣ । ହାର୍କୋର୍ଟ ସାଲ୍ୟୁଟ୍ ନେବା ଉଦ୍ଦେଶ୍ୟରେ ଦ୍ୱାର ଦେଶକୁ ଚାଲିଗଲେ । )

ହାର୍କୋର୍ଟ—Good morning Raja Saheb, Good morning. But who is the Raja of Puri ?

ଥୋମାସ—Colonel, the Raja has not come.

ବକ୍ସି—ଇଏ ରାଜାର ମନ୍ତ୍ରମଣି, ଓଡ଼ିଶାର ଗଜପତି ରାଜାର ଦ୍ୱାରସ୍ଥ ହୁଅନ୍ତି ନାହିଁ ।

ହାର୍କୋର୍ଟ—କିଛି ବୁଝି ନ ପାରି ହସୁଥାନ୍ତି । Yes, Yes.

ବକ୍ସି—ସେ ହେଉଛନ୍ତି ଗଜପତିଙ୍କର ପ୍ରଧାନ ଅମାତ୍ୟ, ରାଜଗୁରୁ ଜୟକୃଷ୍ଣ ମହାପାତ୍ର ।

ଥୋମାସ—ଆଉ ତୁମେ ?

ଜୟକୃଷ୍ଣ—ଉତ୍ତମ ନର୍ତ୍ତେ ସାହେବ, ପ୍ରଶ୍ନ କର୍ତ୍ତାର ଶିଷ୍ଟାଗ୍ରର ହେଉଛି 'ଆପଣ' ।

ଥୋମାସ—Right. ଆପନ୍, ଆପନ୍ ।

ଜୟକୃଷ୍ଣ—ଗଜପତିଙ୍କର ସେନାଧ୍ୟକ୍ଷ, ଖୋର୍ଦ୍ଧା ପାଇକଙ୍କର ଶିର-ଭୂଷଣ—ବକ୍ସି ଜଗବନ୍ଧୁ ମହାପାତ୍ର ବିଦ୍ୟାଧର ଭ୍ରମରବର ରାୟ ।

ହାର୍କୋର୍ଟ—O such a big name ! Good God !

ଥୋମାସ—He is the minister and he is the general.

ହାର୍କୋର୍ଟ—Yes be seated.

ଥୋମାସ—ଆସନ୍ ଗ୍ରହଣ୍ତୁ—

(ସମସ୍ତେ ଆସନ ଗ୍ରହଣ କଲେ)

ଥୋମାସ—ଆପଣଙ୍କର ରାଜା କଣ୍ ଖବର ପଠାଇଲେ ?

ଜୟକୃଷ୍ଣ—ଗଜପତି ଖବର ଦେଇ ନାହାନ୍ତି, ଆମେ ନିଜେ ନିଜେ ଆସିଛୁ ।

ଥୋମାସ—They have come of their own accord.

ହାର୍କୋର୍ଟ—Why ?

ଥୋମାସ—କାହିଁକି ଆପଣ ଆସିଛ ?

ଜୟକୃଷ୍ଣ—ଫିରିଙ୍ଗି ଫଉଜ ନେଇ ଆପଣମାନେ ଏଠୁ ଫେରିଯାନ୍ତୁ ।

ଥୋମାସ—ଆମେ ଯିବୁ ନ ଯାଉ ।

ଚଳ୍ପି—(କଟୋକ ସ୍ପର୍ଶକରି) ଏଇ ତରବାରୀ ତାର ଉତ୍ତର ଦେବ ।

ହାର୍କୋର୍ଟ—What is the matter ?

ଥୋମାସ—They threaten and ask us to quit.

ହାର୍କୋର୍ଟ—Is that ?

ଥୋମାସ—କନ୍ଟୁ, ମନ୍ତ୍ରୀ ଆଉ ଚଳ୍ପି ··· ତୁମେ କେନ୍ ମନକୁ ଆସିଲ ? ମରହଟ୍ଟା ରଘୁଜୀ ସଙ୍ଗେ ଆମର ବନ୍ଦୋବସ୍ତ ସନ୍ଧି ହେଲା, ତାଙ୍କ ଫଲରେ ଓଡ଼ିଶା ପାଇଲୁ । ଆମେ ଓଡ଼ିଶାର ଲୋଡ୍ ମାଲିକ ।

ଜୟକୃଷ୍ଣ—ସେ କାଗଜ ଉପରର ମାଲିକପଣ ଭୁଲିଯାନ୍ତୁ ସାହେବ—'ଓଡ଼ିଶା ଅମର—ଓଡ଼ିଆ ଅମର ହୋଇ ରହିବ । ଗଜପତିଙ୍କର ମନ୍ତ୍ରୀ ହିସାବରେ, ରାଜାର ପ୍ରତିନିଧି ହିସାବରେ ମୁଁ ଆପଣଙ୍କୁ ଅନୁରୋଧ କରିବାକୁ ଆସିଛି । କୌଣସି

ଅପ୍ରୀତକର ସବସ୍ଥିତ ଘଟିବା ପୂର୍ବରୁ ଆପଣ ଓଡ଼ିଶା ଛାଡ଼ି ଯିବାକୁ ପଡ଼ନ୍ତୁ ।

ଥୋମାସ—କ ପରିସ୍ଥିତି ହୋଇ ପାରେ ?

ବକ୍‌ସି—ଯୁଦ୍ଧ ।

ଥୋମାସ—( ହସି ଉଠିଲେ ) ଆମେ ବନ୍ଧୁକ ଲଢାଇ ଦେଖିଛୁ ବକ୍‌ସି ।

ବକ୍‌ସି—କିନ୍ତୁ ଓଡ଼ିଆ ପାଇକର ଲଢ଼ାଇ ଦେଖି ନାହାନ୍ତି ସାହେବ ।

ଥୋମାସ—ସେ କଥା ବନ୍ଦ ଥାଉ । ଲଢ଼ାଇ ଯେତେବେଳେ ହବା କଥା ସେତେବେଳେ ହବ କିନ୍ତୁ ଆମ୍ଭମାନଙ୍କର ରାଜା ସାହେବଙ୍କୁ ଆମେ ମେଟ୍ରେଟ୍ ଦ୍ୱାରରେ ପତ୍ର ପଠାଇଲୁ, ତାର ଉତ୍ତର ଅପେକ୍ଷା କରୁଛୁ । ମନେହେଉଛି ତାଙ୍କୁ ଯେଉଁ ସୁବିଧା ନ ଦେଲ, ସେ ସୁବିଧା ଆମେ ଦେବୁ ।

ବକ୍‌ସି—ରାଜଗୁରୁ ଆସନ୍ତି ?

ଜୟକୃଷ୍ଣ—ମୋର ମଧ୍ୟ ମନେ ହେଉଛି ଯୁଦ୍ଧ ଅପେକ୍ଷା ଏହାର ଉତ୍ତମ ମୀମାଂସା ।

ହାର୍କୋଟ—But how they have Come without the Rajas' permission ?

ଥୋମାସ—ରାଜାଙ୍କ ହୁକୁମ ନ ନେଇ ଆପଣ କିପରି ଆସିଲ ?

ଜୟକୃଷ୍ଣ—ରାଜାଙ୍କର ହୁକୁମ ନେବାର କୌଣସି ପ୍ରୟୋଜନ ନ ଥିଲା । ମୁଁ ରାଜ ପ୍ରତିନିଧି-ତଥା ଜନତା ଅଭୂ ପ୍ରଜାର ପ୍ରତିନିଧି । ଆପଣ ଜାଣନ୍ତି ନାହିଁ ସାହେବ ଏ ଦେଶର ରାଜା ଯେତିକି ବିଶ୍ୱାସ କରେ ତାର ମନ୍ତ୍ରୀଙ୍କୁ, ଏ ଦେଶର ଜନତା ଠିକ୍ ସେତିକି ବିଶ୍ୱାସ କରେ ତାର ବଂଶ ସାମନ୍ତଙ୍କ

ପ୍ରତିନିଧିଙ୍କୁ, ଆଉ ପ୍ରତିନିଧିଗଣରେ ରାଜ୍ୟର ପ୍ରତିନିଧି ସବୁଠାରୁ ବେଶୀ ବିଶ୍ୱାସ କରେ ଭାର ଦେଇଥିବାକୁ । ସେଇ କର୍ତ୍ତବ୍ୟର ଇଂଗିତରେ ପରିଚାଳିତ ହୋଇ ଆମେ ଏଠାକୁ ଆସିଛୁ ।

ଥୋମାସ—ବଟ, ହାମର କ୍ୟାମ୍ପକୁ ତୁମେ ଅନେକ ଆସିଛ, ହାମର ଫଉଜ ଯାଉ—

ବକ୍ସି—କାହିଁ କହିବେ ? ଭୁଲ ଯାନ୍ତୁ ନାହିଁ ସାହେବ, ରାଜମନ୍ତ୍ରୀଙ୍କ ସଙ୍ଗେ ଏ ନଗଣ୍ୟ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ, ଆଉ ସଙ୍ଗରେ ଅଛି ତାର ଏଇ ପୂର୍ବପୁରୁଷପିତା ତରବାରୀ, ଯାହା ପଠାଣ ମୋଗଲ ବର୍ଗୀ ସମସ୍ତଙ୍କର ତାଜା ଲହୁ ଶୋଷି ଶୋଷି ଟଣକ ହୋଇ ରହିଛି ।

ଜୟକୃଷ୍ଣ—ତା ହେଲେ ଆପଣ ଉପଯୋଗ କର—

ଥୋମାସ—No No ଠିକ୍ ଟା ନୁହେଁ ହାମର ବିଶ୍ୱାସ ରାଜା ହାମକଠାରେ ଜରୁର ରାଜି ହେବ ।

ଜୟକୃଷ୍ଣ—ବକ୍ସି ଆପଣ ?

ବକ୍ସି—ବୁଝନ୍ତୁ ରାଜଗୁରୁ । ( ଏତିକି ବେଳେ ସିପାହୀ ହାର୍କୋର୍ଟଙ୍କୁ ଖଣ୍ଡେ ଚିଠି ଦେଇଗଲା । ହାର୍କୋର୍ଟ ପଢ଼ି ସାରି )

ହାର୍କୋର୍ଟ—( ଆନନ୍ଦରେ ) Captain, the King has agreed.

ଥୋମାସ—Is that ? ( ସେ ଚିଠିଟି ଆଣି ପଢ଼ିଲେ ) ମନ୍ତ୍ରୀ ଆଉ ବକ୍ସି—ତୁମର ରାଜା ପତ୍ର ଦେଲା ସେ ଆମର ସର୍ତ୍ତରେ ରାଜି । ସେ ଆମକୁ ଖୁସି କରିବାକୁ ଧନ ଓ ଟାଇମ ଠିକ୍ କରୁ ପତ୍ର ଦେଇଛି । ଦେଖ ଟାର ନକଲ ହାମ ପାଖକୁ ଆସିଲା । (ଜୟକୃଷ୍ଣ ଚିଠି ନେଇ ପଢ଼ିଲେ, ମୁହଁ ତାଙ୍କର ଝାଉଁଳା ପଡ଼ିଲା ।)

ଜମ୍ବୁବନ୍ତ—ବଢ଼ସି ଅସଟଣ ?

ବଢ଼ସି—( ବୁଝି ପାରିଲେ ) ଗୃହନ୍ତୁ । ( ସେ ଅସନ ତ୍ୟାଗ କରି ଅଗ୍ରସର ହେଉଥିଲେ )

ଥୋମାସ—ହିଁ ଯିବା ଟୁବଂକୁ—ଟୁମେ ହେଲ ମନ୍ତ୍ରୀ ଥିଲ ଅପନ୍ ହେଲେ ସେନାପତି—ହାମେ ଅପନ ଦୁହିଙ୍କୁ କନଟ୍ରୋଲ୍‌ଲେଷ

ଭଡ୍ରୁ—( ସେ ଉଦ୍ଧତ ସହଭାବେ କୁର୍ତ୍ତିସ କରି ହସି ଉଠିଲେ । ଜମ୍ବୁବନ୍ତ ଓ ବଢ଼ସି ଉତ୍ତର ନ ଦେଇ ବାହାରି ଗଲେ । ହାର୍ବର୍ଟ ଉଚ୍ଚସ୍ବର ହସ ହସି ଉଠିଲେ )

ହାର୍ବର୍ଟ—Rule Bitania Rule. ( ବାଜି ଉଠିଲା ବାଦ୍ୟ ଯନ୍ତ୍ର । ଥୋମାସ ହସୁଥାନ୍ତି…… )

---

## ୩ୟ ଦୃଶ୍ୟ

( ଖୋର୍ଦ୍ଧା ଅଞ୍ଚଳସ୍ଥ ଏକ ଜନଶୂନ୍ୟ ରାସ୍ତା । ସମୟ ରାତି )

ମଦନ—( ଛପି ଛପି ପଶି ଆସି ) ଜଉରକବାଟେ ! ଜଉର କବାଟେ—

ଜଃ ଭବାନ—( ଅନୁଗମନ କରି ) କାହିଁକି ଏତେ ପାଟିଛାଏ କରୁଛ ହେ ? ଗୋଇନ୍ଦା ସବୁ ସୁଧ ଅଢ଼େ ମାଡ଼ ଗଲେଣି । ଏ ଟୁପିଧାରି ଅମଳରେ ମାଟି ଭୋଡ଼ର ବି କାନ ଅଛି, ବୁଝିଲ ?

ମଦନ—ମାଲ ସରଞ୍ଜାମ ସବୁ ଠିକ୍ କରି ଆଣିଛତ ?

ଜଃ ଭବାନ—ସୁଲ ହେ ଜେତେ ଫଟେଇ ହଜର । ହଁ ହଁ ଆଣିଛୁ । ( ସେମାନେ ଯିବାକୁ ଉଦ୍ୟତ ହେଉଥିବା ବେଳେ ଅନ୍ତରାଳରୁ ଶୁଥରର ଡାକ ଶୁଭିଲା )

ଶ୍ରୀଧର—ଅରେ ବାପ, ତୁମ୍ଭେ ଦୁହେଁ କଏ ? ଚିହ୍ନଏ ଶୁଣି ଶୁଣା ।

ଜଃ ଭବାଣ୍ଟ—ସଦନ, ଦେଖ ? ମୁଁ ମନା କରୁଛି ହେଉଛି କିଏ ଗୋଟେ ଅସିଲଣି ଡାକୁର ଦଳର କଏ ହବ ପରା ?

ଶ୍ରୀଧର—( ଛଦ୍ମ ବେଶରେ ପଶି ଆସି ) ବାପ, ମୁଁ ବୁଢ଼ା ଲୋକ, ମୋର ଗୋଟେ କାମ କରିଦେବ ? ମୁଁ ଜାଣେ, ତୁମେ ଦୁହେଁ ଗୋଟାଏ କଷ୍ଟ କରୁଣ ଭାବରେ ବାହାରିଛ—ତମ ମୁହଁ କହୁ ଦେଉଛି ।

ଜଃ ଭବାଣ୍ଟ—ସଦନ, ଇଏ ସେଇ—

ସଦନ—ତୁମେ କଏ ହୋ । ଏତେ ରାତିରେ ତୁମର କାମ କଣ ? ତୁମେ କଣ ଏଇଠିକାର ଲୋକ ନୁହଁ ? ଦେଖୁଛ, ଜାଣୁଛ, ରାଜ୍ୟରେ ଗୋଳମାଳ ଲାଗିଛି—

ଶ୍ରୀଧର—ସବୁ ଜାଣିଛି ବାପ, ସେଇଥି ପାଇଁତ ରାତିରେ ବାହାରିଛି । ଚିହ୍ନଏ ଯୋଦ୍ଧା ଗଡକୁ ବାଟ ଦେଖାଇ ଦେବ ? ମହାରାଜାଙ୍କ ପାଖରେ ମୋର ଗୋଟିଏ ଗୁହାରି ଅଛି—

ସଦନ—ଏତେ ରାତିଅଁ ତୁ ? ରାତ ଅଧରେ ତୁ ଯିବୁ ଗୁହାରି କରିବାକୁ ? କହ ସତ ସତ କଥା । ତୁ କଏ ? ନ ହେଲେ—

ଶ୍ରୀଧର—ବାପ-ମୁଁ ଶ୍ରୀକ୍ଷେତ୍ରରୁ ଆସିଛି ଯିବି ଗ୍ରାମୁଁଙ୍କ ପାଖକୁ—

ଜଃ ଭବାଣ୍ଟ—ସଦନ, ଏଟା ଭଲରେ ମାନିବ ନାହିଁ—ଏହାକୁ ଠିକଣା ଯାଗାକୁ ନେଇ ଚାଲ ।

ଶ୍ରୀଧର—ଗଡକୁ ନ ହେଲେ ନାଇ—"ସେଇ ଠିକଣା ଯାଗାକୁ" ଚାଲ ବାପ—

ଜଃ ଭବାଣ୍ଟ—ସଦନ, ମତେ ତ କମିତ କମିତ ଜଣା ପଡୁଛି ।

ସଦନ—ଏଇଟାକୁ ଡର ହେ ଏଇଠି ଶେଷ କରିଦଏ । ଏମିତିତ କେତେ ଶେଷ ପାଇଲେଣି—ଏବେ ତାଙ୍କ ସାଙ୍ଗକୁ ଯାଉ ।

ଶୁଅର—ତୁଣ୍ଡରେ କହୁଦେଲେ ଖାଲି ଶେଷ ହୋଇଯିବ । ଆଗ ତୁମ ଗାଲଟା ଦେଖ, ସେଥିରେ ମୋ ଦାଁ ଅଛି କି ନାହିଁ ।

ଜ: ଭବାନୀ—ସଦନ !

ସଦନ—ଭବାନୀ ( ତା ପରେ ସେମାନେ ଠଗ୍ ଠଗ୍ ହେଲେ ଓ ସଦନ ଛୁରୀ ବାହାରକରି ଶୁଅରକୁ ମାରିବାକୁ ଉଦ୍ୟତ ହେବା ବେଳେ )

ଶୁଅର—( ନିଜର ଛଦ୍ମବେଶ ଖୋଲି ) ଆରେ ଆରେ, ଶେଷରେ ସତକୁ ସତ ଶୁଅରଟାକୁ ମାରି ପକାଇବ ନା କଣ ?

ଜ: ଭବାନୀ
ସଦନ }—ଶୁଅରେ !

ଜ: ଭବାନୀ—ଆଚ୍ଛା ଲୋକ ତୁମେ ଶୁଅରେ । ଏମିତି କରନ୍ତି ନା ?

ସଦନ—ଆମ ଦୁ' ଜଣଙ୍କୁ ଭେଲକା କରି ଦେଲ ହେ ।

ଶୁଅର—ନାହିଁ ହେଁ—ମୁଁ ବର୍ତ୍ତବଲି ଫିରଙ୍ଗିଙ୍କ ଆମ ସହରରେ ଗୋଇନ୍ଦା ପଶିଛନ୍ତି । ଆମେ ତା ସହରରେ ଗୋଇନ୍ଦା ହୋଇ ପାରୁଛୁ କି ନା ସେଇଆ ଟିକେ ପରଖ କରୁଥିଲି । ହଁ ଭାଇ କିମିତି ବୁଝିଲ ?

ଜ: ଭବାନୀ—ଅଳ୍ପ ଆମ ଦୁହିଁଙ୍କ ପାଳି ନିଆଁ ଲଗେଇବାକୁ ।

ଶୁଅର—ନିଆଁ ଲଗାଇ ଦେଲେ କି ଦୁଇ ଚାରିଟା ଫିରଙ୍ଗିଙ୍କୁ ମାରି ଦେଲେ କଣ ସେମାନେ ଓଡ଼ିଶା ଛାଡ଼ି ଚାଲିଯିବେ ?

ସଦନ—ଓଡ଼ିଶା ଛାଡ଼ି ନ ଯାନ୍ତୁ ସେଥିରେ ଆମର କଣ ଅଛି ? ହେଲେ ଆମ ଶୋଷଧାରେ ସେମାନଙ୍କ ରାଜୁତି ଚଳିବ ନାହିଁ ।

ଜ: ଭବାନୀ—ଆମ ଉପରେ ସେମାନେ କି କଲେଣି କଣ ? ଅସ୍ଥ ଅସ୍ଥ ତାଲଅଲୁ ହଜମ କରିବାକୁ ବସିଲେଣି । ଧରମ ଅଛ

ରହିବ ନାହିଁ । ଖାଲି କଣ ସେତିକି ? ହାତ ହତିଆର ଯାହାର ଯାହା ଥିଲା, ସେ ସବୁ ପୁଣି ସେମାନଙ୍କ ପାଖପଟରେ ରହିବ । ଭାଙ୍ଗିବ ତେ ଅପେ କଣ ସାଧକ ନୋହୁଁ ?

ସ୍ୱଅର—ଜଗନ୍ନ ଭବାନୀ ! ତୁ ବହ ଘୋଟେ ଭାପ କରିଦେବା ଠିକ୍ ନୁହେଁ । କହିପି, ଗ୍ରାଜଗୁରୁ ଙ୍କ ଗଜପତିଙ୍କର ଏଥିରେ ମତ ଅଛି କି ନାହିଁ ବୁଝିଛ ? ସେଇଥି ପାଇଁ ପତ୍ର ପଣ୍ଡା ପଢ଼ିଆରୀ ସମସ୍ତେ ମେଣ୍ଟ ବାନ୍ଧି ମତେ ଗ୍ରାମୁଙ୍କ ପାଖକୁ ପଠାଇଛନ୍ତି ।

ସଦନ—ହଁ ହେ—ଅଜ ଗ୍ରାମୁଁ । ଦାନ୍ତ ଖାଜାଯାଇ ତ ତୋଇଁକୁ କମନ୍ଧଣି ଭଲଭଲ, ଷ୍ଟେଜ ଷ୍ଟିତ ବଚ, ସୁନା ରୁପା ଦେଇ, ଫିରଙ୍ଗିକୁ ଅଣ୍ଟିରେ ପୂରାଇଲେ—ବାଜ ଆମ ଗଜପତି—

ଭୁ: ଭବାନୀ—ଗ୍ରାମୁ ଅପର କଣ ଭମ ଭାମଟାଏ କହିଛନ୍ତି କି ?

ସ୍ୱଅର—କଣ ?

ଭୁ: ଭବାନୀ—ଏଇ ଫିରଙ୍ଗି ସାଥିରେ ସନ୍ଧି । ଗ୍ରାହଥିଲେ ସନ୍ଧିଟାଏ କରଦେଲେ ଖୁବ୍ ଶାନ୍ତିରେ ରହିବେ; ବର୍ଗୀଙ୍କ ଅତ୍ୟାଗ୍ରହ ଅଉ ହେବ ନାହିଁ ।

ସଦନ—ହେଲେ ହେଲା କଣ ? ମନ୍ଦିରଗରୁ ଯାଇଁ ଭାନ୍ତାରରେ ପଡ଼ିବା କଥା । ଗ୍ରୁଇ ହେ ଜଗର ଭବାନୀ ଯାହା କରିବାର କଥା ହାତେ ହାତେ କରିନେବା ( ଦୁହେଁ ପ୍ରସ୍ଥାନ କଲେ )

ସ୍ୱଅର—ପଦନ, ଜଗର ଭବାନୀ, ଅରେ ମୋ କଥା ଟିକଏ ଶୁଣ ଗ୍ରହିଆଡୁ ଅଡୁଅ ହୋଇ ଯିବ । ଗ୍ରାମୁ ଆଜର ବେଣୀ ବିପଦରେ ପଡ଼ିପିବେ—

( ସେ ମଧ୍ୟ ସେମାନଙ୍କର ଅନୁଧାବନ କଲେ )

——

# ୪ର୍ଥ ଦୃଶ୍ୟ

[ ଅବରୁଦ୍ଧ ବରୁଣେଇ ଦୁର୍ଗର ଗୋଟିଏ କୋଠରୀ । କୋଠରୀର ଚାରିପାଖରେ ଢାଲ, ତରବାରୀ ଓ ବର୍ଚ୍ଛା ପ୍ରଭୃତି ଅସ୍ତ୍ରଶସ୍ତ୍ର ଝୁଲୁଛି । ଗୋଟାଏ କଡ଼କୁ ଏକ ଆସନ ଶୂନ୍ୟ ପଡ଼ିଛି । ସେଇ ଶୂନ୍ୟ କୋଠରୀରେ ଭରି ରହିଥିଲା ଏକ କରୁଣ ଆର୍ତ୍ତନାଦ । ଧୀରେ ଧୀରେ ପାଦ ଶବ୍ଦ ଶୁଣାଗଲା । ପଶି ଆସିଲେ ରାଜା ମୁକୁନ୍ଦ-ଦେବ । ଏ ଦୁର୍ଦ୍ଦିନରେ ମଧ୍ୟ ଦେହରେ ତାଙ୍କର ହୀରା ଜରିତାର ପୋଷାକ । ସେ ଉଦ୍‌ବେଗର ସହିତ କାନ୍ଥର ପ୍ରତ୍ୟେକ ଅସ୍ତ୍ରକୁ ଗୋଟି ଗୋଟି କରି ଆଣି ପରୀକ୍ଷା କରିବାକୁ ଲାଗିଲେ । କିନ୍ତୁ କେଉଁଥିରେ ତାଙ୍କର ତୃପ୍ତି ହୁଏନାଁ ଯେମିତି । ଶେଷରେ ଅସ୍ଥିର ଭାବରେ ନିଜର ହାତରେ ମୁହଁ ତାଙ୍କର ଚାପି ରଖିଲେ । କିନ୍ତୁ ସମସ୍ତ କଟିଗଲା । ନିଜର ନୀରବତାରେ ନିଜେ ଅସ୍ଥିର ହୋଇ ପଡ଼ିଲେ ] ।

ମୁକୁନ୍ଦଦେବ—କସ୍ତୁରୀ, କସ୍ତୁରୀ ( ପଶିଆସିଲେ କସ୍ତୁରୀ । ପାଦରେ ନୃତ୍ୟର ଗତି ଅଙ୍ଗରେ ନୃତ୍ୟର ପରିପାଟୀ । ସେ ଭୂମିସ୍ପର୍ଶ କରି ପ୍ରଣାମ କଲେ ।)

ମୁକୁନ୍ଦ—ନୃତ୍ୟ······

କସ୍ତୁରୀ—( ଯୋଡ଼ ହସ୍ତ ହୋଇ ) ସ୍ମରଣକୁ ଅସ୍ତ ସ୍ୱାମୀ—ବାହାରେ—

ମୁକୁନ୍ଦ—ଜାଣେ, ଶତ୍ରୁ ଦୁର୍ଗ ଅବରୋଧ କରିଛି । ବରୁଣେଇ ଦୁର୍ଗ ମଧ୍ୟରେ ଜୀବନ ଆମ୍ଭମାନଙ୍କର ଅଳ୍ପ ବଡ଼ଲ—ଜାଣେ-

କସ୍ତୁରୀ—ସ୍ୱାମୀ !

ମୁକୁନ୍ଦ—ନ୍ୟାୟ ଅନ୍ୟାୟର ବିଚାର, ପାପ ପୁଣ୍ୟର ବିଚାର କରି ମନର ପରାମର୍ଶ ନେବାକୁ ମୋର ସମୟ ନାହିଁ ବାଳକା···

ନୃତ୍ୟ ( କିଛି ସମୟ ଚୁପ୍ ରହି ) କିଏବ ପ୍ରଳୟରେ ହୋଇଥିଲା ଯେଉଁ ତାଣ୍ଡବ ।

( ଇନ୍ଦ୍ରାଣୀର ନୃତ୍ୟରତା ପଦ ଯୁଗଳ ଚଞ୍ଚଳ ହୋଇ ଉଠିଲା । ଦେହର ସ୍ତରେ ସ୍ତରେ ଫୁଟି ଉଠିଲା ତାଣ୍ଡବର ଲହରୀ । ମଞ୍ଚରେ ପଶି ଆସିଲେ ବକ୍ସି । ଇନ୍ଦ୍ରାଣୀର ଗତି ମନ୍ଥର ହୋଇଗଲା । ସେ ବକ୍ସିଙ୍କୁ ନମସ୍କାର କରି ପଛକୁ ଘୁଞ୍ଚିଗଲେ । ବକ୍ସି ଆଖି ଟେକି ଚାହିଁଲେ ମୁକୁନ୍ଦଦେବଙ୍କୁ । ମୁକୁନ୍ଦ-ଦେବଙ୍କର ଧ୍ୟାନ ଭାଙ୍ଗିଗଲା । ସେ ଚିତ୍କାର କରି ଉଠିଲେ )

ମୁକୁନ୍ଦ—ବକସି ।

ବକ୍ସି—( ସ୍ଥିର ନିଶ୍ଚଳ ହୋଇ ) ଏ କଣ ଦେଖୁଛନ୍ତି ସ୍ୱାମୀ ?

ମୁକୁନ୍ଦ—କଣ ? ଅବରୁଦ୍ଧ ଦୁର୍ଗ ମଧ୍ୟରେ ନୃତ୍ୟର ଲହରୀ, ନା ?

ବକ୍ସି—ହଁ ସ୍ୱାମୀ ।

ମୁକୁନ୍ଦ—( ଅସହାୟ ଭାବରେ ) ମୁଁ ନିରୁପାୟ ବକ୍ସି । ଯେଉଁଠି ପାଇକମାନେ ସାମାନ୍ୟ ଟିକଏ ବିଦ୍ରୋହ କଲେ, ଫିରିଙ୍ଗିର ବିଶ୍ୱାସରେ ମୁଁ ହେଲି ଦୋଷୀ । ସବୁ ବନ୍ଦୀ କରିବାର ଆଦେଶ ହେଲା । ଫଳରେ ଶ୍ରୀକ୍ଷେତ୍ର ଛାଡ଼ି ପଳାଇ ଆସି ମୁଁ ଏଇ ବରୁଣେଇ ଦୁର୍ଗରେ ଆଶ୍ରୟ ନେଲି । ବକ୍ସି, ଉତ୍କଳର ଗଜପତି ଅଙ୍କ ତାର ସମସ୍ତ ଆଶା ଭରସା ହରାଇ ଏଇଥିକୁ ଶେଷ ପନ୍ଥା ବୋଲି ଧରି ନେଇଛନ୍ତି ।

ବକ୍ସି—କିନ୍ତୁ ବକ୍ସିର ମରି ନାହିଁ । ଜୟୀ ରାଜଗୁରୁ ଏବେ ମଧ୍ୟ ଜୀବିତ ଅଛନ୍ତି ।

ମୁକୁନ୍ଦ—ଜାଣେ, କିନ୍ତୁ ଗଜପତି ଅଙ୍କ ଭିତର ମରିଯାଇଛନ୍ତି । ଅବସ୍ଥାର ରଥଚକ୍ର ତଳେ ଗଜପତି ଅଙ୍କ ନିସ୍ପେଷିତ ।

ବକ୍ସି—ଜନ୍ମେପ୍ସିତ ? କିନ୍ତୁ ଏଥିପାଇଁ ଦାୟୀ କିଏ ଗଜପତି ? ତାଙ୍କର ଅପଣ ଫିରଙ୍ଗ ର ଗୃହ ବାତ୍ୟାରେ ଭୁଲି ଯାଇଁ ତାକୁ ଧାରେଣ୍ଟି ଅଛିଲେ । ତାଙ୍କର ଅପଣ ସେବନ କୌଣସି ପରାମର୍ଶକୁ ସାମାନ୍ୟ କର୍ଣ୍ଣପାତ ମଧ୍ୟ କଲେ ନାହିଁ ।

ମୁକୁନ୍ଦ—( ଦୀର୍ଘନିଶ୍ୱାସ ପକାଇ ) ଅତୀତକୁ ଭୁଲି ଯାଅ ବକ୍ସି ।

ବକ୍ସି—କିନ୍ତୁ ବର୍ତ୍ତମାନର ଯେ ସଙ୍କଟମୟ ପରିସ୍ଥିତି—ସେଥିପ୍ରତି ତାଙ୍କର ବା ଆମ୍ଭ ସଜାଗ ରହୁ ନାହାନ୍ତି ।

ମୁକୁନ୍ଦ—( ବିଚଳିତ ହୋଇ ପଡ଼ି ) ତୁମେ ସବୁ ଜାଣ ବକ୍ସି, ତୁମେ ସବୁ ଜାଣ । ପ୍ରଶ୍ନ ପରେ ପ୍ରଶ୍ନ ପଗ୍ଚର ମତେ ଅଧିକ ବିଚଳିତ କରନାହିଁ । ଗୋଟାଏ ଦୁର୍ବଳ ମୁହୂର୍ତ୍ତର ଦୁର୍ବଳତାରେ ଯାହା ହୋଇଯାଇଛି ତାକୁ ତୁମେ ସଜାଡ଼ି ଦିଅ—ବାରୁଣୀେଇ ଦୁର୍ଗକୁ ରକ୍ଷାକର ।

( ମୁକୁନ୍ଦ ଦେବ ଉତ୍ତରର ପ୍ରତ୍ୟାଶା ନ କରି କକ୍ଷାନ୍ତରକୁ ଚାଲିଗଲେ—ପଛେ ପଛେ ତାଙ୍କର ଚନ୍ଦ୍ରକୁଣ୍ଡ )

ବକ୍ସି—( ଦାୟିତ୍ୱର ଭାବରେ ମଥା ତଳକୁ ନଇଁ ଆସିଲା ) ବାରୁଣୀେଇ ଦୁର୍ଗକୁ ରକ୍ଷା କରିବ ।

( ବକ୍ସିଙ୍କର ଅଲକ୍ଷ୍ୟରେ ଜମ୍ବୁକୁଣ୍ଡ ରାଜଗୃହରୁ ପଶିଆସି )

ଜମ୍ବୁକୁଣ୍ଡ—ବକ୍ସି ଆପଣେ !

ବକ୍ସି—(ଚମକି ପଡ଼ି ପଛକୁ ଗୃହିଁଲେ) ଆପଣ ରାଜଗୃହରୁ······

ଜମ୍ବୁକୁଣ୍ଡ—ମୁଁ ବୁଝିପାରୁ ନାହିଁ ବକ୍ସି ଆପଣେ ଆପଣଙ୍କର କଣ ହୋଇଛି ।

ବକ୍ସି—( ଅସହାୟ ଭାବରେ ) ମୁଁ ବି ବୁଝିପାରୁ ନାହିଁ ମୋର କଣ ହୋଇଛି ।

ଜୟକୃଷ୍ଣ—ସେନାଧ୍ୟକ୍ଷ ବକ୍‌ସିଙ୍କ ମୁହଁରୁ, ଏ ଉତ୍ତର ପ୍ରତ୍ୟାଶା ଜଗତାଏ ନାହିଁ । ଚକ୍ଷୁଣେଇ ଦୁର୍ଗରୁ କେନ୍ଦ୍ର କରି ଯାହାସବୁ ଘଟି ଯାଇଛି, ଆଜି ଅବଶ୍ୟ କହୁଛି ତାର ସୁସ୍ପଷ୍ଟ ଅଙ୍କ ସବଳତମ ବ୍ୟାଖ୍ୟା, ଗୋଟି ଗୋଟି କରି ପ୍ରତ୍ୟେକର ଉତ୍ତର ଆଜି ଦେବାକୁ ପଡ଼ିବ ।

ବକ୍‌ସି—କୌଣସି ଧନ ମୁଁ ଯାର ପ୍ରତିବାଦ କରି ନାହିଁ ।

ଜୟକୃଷ୍ଣ—କୁହନ୍ତୁ ତା ହେଲେ, ତାହିଁକି ଅପଣ ଏ ସୁନାର ରାଜ୍ୟକୁ ଚୂନା କରିବାକୁ ହାତ ବଢ଼ାଇଲେ ? ତାହିଁକି ଅପଣ ଦେଶ ମାତୃକାର ଗଳାରେ ମରଣ ରଜ୍ଜୁ ଲଗାଇବା ପାଇଁ ପଥ ଉନ୍ମୁକ୍ତ କରିଦେଲେ ?

ବକ୍‌ସି—ମୁଁ ?

ଜୟକୃଷ୍ଣ—ହଁ ଅପଣ ? ସେଦିନ କର୍ଣ୍ଣେଲ ହାର୍କୋର୍ଟ ଶୀତରଙ୍କୁ ଫେରି ଆସି ତାହିଁକି ଅପଣ ଫିରଙ୍ଗି ସହିତ ଯୁଦ୍ଧ କରିବାର ପ୍ରତିକୂଳ ମତ ଦେଲେ ? ତାହିଁକି ଅପଣ ଖୋର୍ଦ୍ଧା ରକ୍ଷାର ମୌଳିକ ପନ୍ଥାଗୁଡ଼ିକୁ —

ବକ୍‌ସି—ବୁଝିଛି । ଫିରଙ୍ଗି ସହିତ ଗଜପତିଙ୍କର ସନ୍ଧି ସ୍ୱାକ୍ଷର ପାଇଁ ଅପଣ ମତେ ଦୋଷୀ ସାବ୍ୟସ୍ତ କରିବାକୁ ଚାହାନ୍ତି । କିନ୍ତୁ ଅପଣ ତ ଜାଣନ୍ତି ନାହିଁ ଇଂରେଜ ଶକ୍ତି ବିଷୟରେ ମୁଁ ଗଜପତିଙ୍କୁ ପରାମର୍ଶ ଦେବା ପୂର୍ବରୁ ଗଜପତି ସନ୍ଧି ପାଇଁ ସିଦ୍ଧାନ୍ତ କରି ସାରିଥିଲେ ।

ଜୟକୃଷ୍ଣ—ଅର୍ଥାତ୍ ବର୍ତ୍ତମାନ ଦେଶରେ ଶୋଚନୀୟ ପରିସ୍ଥିତି ଘଟିଛି ସେଥିପାଇଁ ଅପଣ ଦାୟୀ ନୁହନ୍ତି ?

ବକ୍‌ସି—ଦାୟୀ—ନିଶ୍ଚୟ ଦାୟୀ; କାରଣ ଗଜପତିଙ୍କ ନିର୍ଦ୍ଦେଶରେ ତାଙ୍କର ବକ୍‌ସି ବିଦ୍ରୋହ କରି ପାରି ନାହିଁ । ତାଙ୍କର

ମୀମାଂସାକୁ ସେ ମଥା ପୋତି ସହୁ ନେଇଛନ୍ତି । କିନ୍ତୁ ଆପଣତ ମନ୍ତ୍ରୀ, ଆପଣ ବା କଲେ କଣ ?

ଜୟକୃଷ୍ଣ—ମୁଁ ? କଣ କରିବି ମୁଁ ? ଚାରିଆଡେ ଦେଖିଲି ଆର୍ତ୍ତନାଦ, ଚାରିଆଡେ ହାହାକାର । ସେଇ ମର୍ମଫଟା କରୁଣ ଧ୍ୱନି ଭିତରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି ।

ବକ୍ସି—ଆଜି ଶେଷରେ ଗଜପତି ଆପଣ ଆଉ ମୋର,—ଆମ ତିନି ଜଣଙ୍କର ଗତି ହେଲା ଖୋର୍ଦ୍ଧା ଦୁର୍ଗରେ । ଫଳରେ ଗଜପତି-ସିଂହାସନ ବଶ୍ୟତା ସ୍ୱୀକାର କଲା ।

ଜୟକୃଷ୍ଣ—ସେଥିଲାଗିରେ କଣ ରକ୍ଷା ମିଳିଛି ? ଯେଉଁ ଫିରିଙ୍ଗିର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ଏତେ ବଡ଼ ବୁଝାମଣା ହୋଇଗଲା, ସେଇ ଫିରିଙ୍ଗିର ଅତ୍ୟାଚାରରେ ଗୁମୁ ହେଲେ ରକ୍ତ ହସ୍ତ—ଆଜି ଶେଷରେ ପ୍ରାଣ ଭୟରେ ଶେଷ ସ୍ଥଳ ଆଜି ଏଇ ଅବରୁଦ୍ଧ ବରୁଣେଇ ଦୁର୍ଗରେ ହେଲେ ଆଶ୍ରୟପ୍ରାର୍ଥୀ ।

ବକ୍ସି—ସେ ପୁରୁଣା କଥା ଭୁଲିଯାନ୍ତୁ । ବର୍ତ୍ତମାନ କଥା କହନ୍ତୁ ।

ଜୟକୃଷ୍ଣ—ସେଇ ବର୍ତ୍ତମାନର କଥା କହିବାକୁ ଆସିଛୁ ।

ବକ୍ସି—କ୍ୟାପ୍ଟେନ୍ ଥୋମାସ ଦ୍ୱାରା ଏକୋଇଶ ଦିନ ଧରି ଦୁର୍ଗ ଅବରୁଦ୍ଧ—

ଜୟକୃଷ୍ଣ—ତା ପରେ ?

ବକ୍ସି—ଦୁର୍ଗର ଖାଦ୍ୟ ଆଉ ଅସ୍ତ୍ରଶସ୍ତ୍ର ଖୁବ୍ କଷ୍ଟରେ ଆଉ କେଇଟିଏ ଦିନ ମାତ୍ର ଆମର ବ୍ୟବହାରରେ ଲାଗି ପାରେ ।

ଜୟକୃଷ୍ଣ—( ଅନ୍ୟ ମନସ୍କଭାବରେ ) ହୁଁ

ବକ୍ସି—ତା ପରେ ଅଠଶହ ପାଇକ ଓ ଗଜପତିଙ୍କ ସହିତ ଆପଣଙ୍କୁ ଆଉ ଥରେ ପ୍ରାଣ ହରେଇବାକୁ ପଡ଼ିବ କ୍ଷୁଧା ତୃଷାରେ ଆର୍ତ୍ତନାଦ କରି ।

ଜୟକୃଷ୍ଣ—( ହଠାତ୍ ବିଚଳିତ ହୋଇ ପଡ଼ିଲେ ) ସେଇଥି ପାଇଁ ଆପଣ ତାହାର ଝନା ;ସମର୍ପଣରେ, ଗୋପନ ସ୍ୱରରେ, କ୍ୟାପ୍ଟେନ୍ ଥୋମାସ ପାଖକୁ ସନ୍ଧିର ବାର୍ତ୍ତା ପଠାଇଥିଲେ ?

ବକ୍ସି—ହଁ ସେଇଥି ପାଇଁ ।

ଜୟକୃଷ୍ଣ—କିଏ ଏ ଅଧିକାର ଦେଲା ?

ବକ୍ସି—ଅବାଳବୃଦ୍ଧ ଆଠଗଡ଼ ପାଇକର ଜୀବନର ଦାୟିତ୍ୱ ।

ଜୟକୃଷ୍ଣ—ମୁଁ ତେବେ କେହି ନୁହେଁ ?

ବକ୍ସି—ଅସ୍ୱୀକାର କରୁ ନାହିଁ । କିନ୍ତୁ ରାଜଗୁରୁ ଆପଣ, ଯୁଦ୍ଧ ଆଉ ଏକ ହେଉଛି ସେନାପତିର କାର୍ଯ୍ୟ, ପଲ୍ଲୀର କର୍ତ୍ତବ୍ୟ— ଆପଣ ଗଡ଼ପତିଙ୍କୁ ସମର୍ପଣ କରନ୍ତୁ । ହୁଏତ ଏ ଯୁଦ୍ଧର ଶେଷ ମୀମାଂସା ହୋଇ ପାରିବା ପରେ ମୁଁ ମୋର କାର୍ଯ୍ୟର କୈଫିୟତ ଆପଣଙ୍କୁ ଦେବି ।

ଜୟକୃଷ୍ଣ—ବକ୍ସି ଆପଣେ ?

ବକ୍ସି—ମୁଁ ସ୍ଥିର ଚିତ୍ତରେ ସମସ୍ତ କାର୍ଯ୍ୟ କରୁଛି । ଆପଣ ଗଡ଼ପତିଙ୍କର ବର୍ତ୍ତମାନର ଅବସ୍ଥା ଲକ୍ଷ୍ୟ କଲେଣି ।

ଜୟକୃଷ୍ଣ—କରୁଛି ।

ବକ୍ସି—ଚନ୍ଦ୍ରପାଲଙ୍କର ସେ କେଉଁଠି ?

ଜୟକୃଷ୍ଣ—ଅବରୁଦ୍ଧ ଦୁର୍ଗରେ ··· ···

ବକ୍ସି—ରଙ୍ଗମହଲ ସୃଷ୍ଟି କରି ନର୍ତ୍ତକୀ—ଚରଣର ଛନ୍ଦେ ଛନ୍ଦେ ଉପଭୋଗ କରୁଛନ୍ତି ସଙ୍ଗୀତର ଝଙ୍କାର । କୁହନ୍ତୁ ତ, ଏପରି ପରିସ୍ଥିତିରେ କଣ କରାଯାଇ ପାରେ ? ( ଜୟକୃଷ୍ଣ ନୀରବ ରହିଲେ ) ଉତ୍ତର କାହିଁକି ?

ଜୟକୃଷ୍ଣ—ଉତ୍ତର ନୁହେଁ, ସେଇ ଗଡ଼ପତେ କଥା ଭାବୁଛି—

ବକ୍ସି—ମୁଁ କହୁଥିଲି ଅଟେଣ୍ଡ ସାଇବଙ୍କର କଥା, ବିନା ଖାଦ୍ୟରେ ଫୌଜିମାନଙ୍କୁ ମରଣ ଆଲିଙ୍ଗନ କରିବାକୁ ପଡ଼ିବ ଆଜ ମାତ୍ର ଗୋଟିଏ ଦିନ ପରେ ।

( ଭିତରୁ ଘଣ୍ଟା ଶବ୍ଦ ହେବ ) ବକ୍ସି ଭିତରକୁ ପଶିଗଲେ କିଛି ସମୟ ପରେ ଖଣ୍ଡେ ଚିଠି ପଢ଼ି ପଢ଼ି ପଶି ଆସିଲେ )

ଜୟକୃଷ୍ଣ—କଣ ?

ବକ୍ସି—ଫିରିଙ୍ଗି ଛାଉଣୀରୁ ଚିଠାଏ ଆସିଛି । ( ସେ ଚିଠି ବଢ଼ାଇ ଦେଲେ, ଜୟକୃଷ୍ଣ ନେଇ ପଢ଼ି ସାରି ଚିତ୍କାର କରି ଉଠିଲେ )

ଜୟକୃଷ୍ଣ—ବକ୍ସି ଆପଣେ ! ( ସେ ବସି ପଡ଼ିଲେ ମୁଣ୍ଡ ଚାପିଧରି )

ବକ୍ସି—ଆପଣ ଅସୁସ୍ଥ ବୋଧ କରୁଛନ୍ତି ।

ଜୟକୃଷ୍ଣ—ନାଁ ନାଁ ତା ହୋଇ ପାରିବ ନାହିଁ । ସେଇ ଅମର ଭଲ । ଗୋଟି ଗୋଟି ହୋଇ ଅମେ ଏଠି ପ୍ରାଣ ହରାଇବୁ—ସେଇ ଆମର ଭଲ । କିନ୍ତୁ କ୍ୟାପଟେନ ଥୋମାସର ସର୍ତ୍ତରେ—

ବକ୍ସି—ମୁଁ କ୍ୟାପଟେନ ଥୋମାସର ସର୍ତ୍ତରେ ରାଜି ଅଛି—

ଜୟକୃଷ୍ଣ—ବକ୍ସି ଆପଣେ !

ବକ୍ସି—ସେ ସର୍ତ୍ତ ମୁଁ ଆଗରୁ ଜାଣିଥିଲି ।

ଜୟକୃଷ୍ଣ—ଓଡ଼ିଆ ବାଳକ ଫିରିଙ୍ଗିର ଶିବିରରେ, ତାର ଜନ୍ମଭୂମି ପାଇଁ ଗୋଟିଏ ଗୀତ ଗାଇ ଆସିବାକୁ ଆପଣ ରାଜି ?

ବକ୍ସି—ରାଜି । କାରଣ ବିନାମୂଲ୍ୟରେ ତାର ଆମେ ପାଇବୁ ପ୍ରଚୁର ଖାଦ୍ୟ । ଦେଖନ୍ତୁ ଥୋମାସ ଲେଖିଛି—କମାଣ୍ଡର ବିନା ଜାତ ସାରରେ ସେ ଦୁର୍ଗ ମଧ୍ୟକୁ ପ୍ରଚୁର ଖାଦ୍ୟ ପଠାଇ

ହେବ । ଆପଣ ଅନୁମାନ କରୁଛନ୍ତି ଆଠଶହ ବର୍ଷର ପାଇକ ନିକଟରେ ସେ ଖାଦ୍ୟର ମୂଲ୍ୟ କଣ ?

ଜୟକୃଷ୍ଣ—ତା ହେଲେ ଏସବୁ ମନୁଷ୍ୟତା ନୁହେଁ ସତ୍ୟ ?

କସ୍ତୁରୀ—( ପଣିଆସି ପ୍ରମାଣ କରି ) ମନୁଷ୍ୟତା ନୁହେଁ ସତ୍ୟ । ଫିରିଙ୍ଗିର ଶିବିରକୁ ମୁଁ ଯିବ । ମୁଁ ଅନ୍ତସ୍ଥଳରୁ ଆପଣମାନଙ୍କର କଥାବାର୍ତ୍ତା ଶୁଣିଛି । ହଁ ମୁଁ ଥୋମାସ ଶିବିରରେ ଗୋଟାଏ ରାତି କଟାଇବାକୁ ପ୍ରସ୍ତୁତ ।

ବକ୍ସି—ଆଶୀର୍ବାଦ କରୁଛି କସ୍ତୁରୀ ।

ଜୟକୃଷ୍ଣ—କିନ୍ତୁ ବକ୍ସି ଆପଣେ । ଆପଣ ସତୀତ୍ୱ ଆଉ ମାତୃତ୍ୱକୁ ଏପରି ଭାବରେ ......

କସ୍ତୁରୀ—ସେ ସବୁ ମଣିଷର କଳ୍ପନା । ଆଠଶହ ପାଇକର ପ୍ରାଣ ସଙ୍ଗେ ତୁଳନା କଲେ ସେ ସବୁ ମୂଲ୍ୟ ହୀନ ।

ଆମେ ବୀରଜାତି ମନ୍ତ୍ରୀ ମହାଶୟ । ଜୀବନ ଦେବା ବୀରତ୍ୱ ନୁହେଁ । ଜୀବନର ପ୍ରିୟତମ ପଦାର୍ଥକୁ ବିସର୍ଜନ ଦେବା ହେଉଛି ବୀରତ୍ୱ । ଆପଣ ସେହି ବୀରତ୍ୱ ଆଜି ଦେଖାନ୍ତୁ । ମୁଁ ପ୍ରସ୍ତୁତ ଅଛି ।

( ବକ୍ସି ନିଜ ଡାହାଣ ହାତର ପାପୁଲି ଉପରେ ଅନ୍ୟ ହାତଟି ବୁଲାଇ କଣ ଇଙ୍ଗିତ ଦେଲେ । କସ୍ତୁରୀ ସମ୍ମତି ସୂଚକ ଭଙ୍ଗିରେ ମଥା ଆନ୍ଦୋଳନ କରି ଭିତରକୁ ପଶି ଯାଉଥିଲେ )

ବକ୍ସି—ଶୁଭ । ( ସେ ମଧ୍ୟ ପଛେ ପଛେ ଭିତରକୁ ପଶିଗଲେ )

ଜୟକୃଷ୍ଣ—ଏ ସବୁ କଣ ପ୍ରହେଳିକା ? ( ସେ ଦୀର୍ଘ ନିଶ୍ୱାସ ପକାଇ ନିଷ୍କ୍ରାନ୍ତ ହୋଇଗଲେ )

---

## ୫ମ ଦୃଶ୍ୟ

[ ବରୁଣେଇ ଦୂର୍ଗକୁ ଲାଗିଥିବା ଗୋଟିଏ ରାସ୍ତା । ଆଗ ପଛ ହୋଇ ଚରଣ ପଟ୍ଟନାୟକ ଓ ଫତେ ମହମ୍ମଦ ଚାଲୁଛନ୍ତି । ଚରଣ ବୈଷ୍ଣବ ଧର୍ମୀୟ । ମୁଣ୍ଡରେ ରାମାନନ୍ଦ ଶିଖା ଆଉ ବେକରେ ତୁଳସୀ ମାଳ ]

ଫତେ—ଚରଣ୍ ବାବୁ ହାମ ଅକେଲା ଚଲ ଯାଏଗା ତୁମ ଯାଁହାସେ ଲଉଟ ଯାଓ ।

ଚରଣ— କୃଷ୍ଣ, କୃଷ୍ଣ, ହଇହେ ମିଆଁ ପୁଏ, ସେ ଖୋରଟି ମୋରଟି ଗୁଡ଼ାକ ତାଙ୍କି ଆମ ସଙ୍ଗେ ହଉଚ ବା ?

ଫତେ—ଅରେ ନାଁଇବା ଦୋସ୍ତ, ଅଦାତ କ ନାଁ ? ହମ ଲୋଗ ଥାଅ—ହାମ ଗୁଲଫିଙ୍କ ମେ—

ଚରଣ—କୃଷ୍ଣ କୃଷ୍ଣ—ମନେ ରଖିଲ ହେ, ଆମେ ଯାଉଚୁ ବେଳ ଥାଉ ଜଣି ସୂଚେଇ ଦଉ ।

ଫତେ—ଲେକିନ୍ ଦୋସ୍ତ ହାମର ସମୁଝ ଆତା ନେହିଁ ? କୁମ୍ପାନୀର ସାଥ ଦୋଷ୍ଟା ଲେକେ, ଲଇରେ ଘର ଭର କାଁହାର ସାଙ୍ଗେ ଦୁସ୍‌ମନୀ କରବା ।

ଚରଣ—କୃଷ୍ଣ, କୃଷ୍ଣ, ଇହା ତୁମେ କହଥିଲୁ ହେଦେଇ ପାଇଛ ମିଆଁ ପୁଏ ? ହଇହେ ଲୋକେ କହୁବେ ? ଲୋକେ କୁହନ୍ତୁ । ଲୋକେତ ଆମ ପାଟିକୁ ଅଉ ଗୁଣ୍ଡା ଦେଇ ଦେବେ ନାହିଁ । ଇହା ତୁମର ଅଉ ଦୋଷଟା କେଉଁଠି ? ତୁମେ ଏତେ ଅଙ୍ଗରେଜ୍ଙ୍କ ଶଲ୍ଟା ବାଟେ ଟିକେ ବାଟ ଦେଖେଇ ଦେଲ ! କୁମ୍ପାନୀ ପର ଫଉଜ, ତୁମେ ବାଟ ଦେଖାଇ ନ ଥିଲେ କଣ ବାଟ ପାଇ ନ ଥାନ୍ତେ ?

ଫଟେ—ବାଃ ନୂଟନ୍ଧି ହେ ଦୋସ୍ତ, ସେଇ ଫୋଣ୍ଡ କାସ୍ମିଗିସ୍ଟା ଘାଇଲ ହେ । ସମସ୍ତଙ୍କ ଅଖିରେ ଟପଃ ଶଶୁ । ଲେକିନ୍ ଭଦ୍ରଚନ୍ଦ୍ର ଭଣ ନାଁ ଜାମଭଦ୍ରସମ୍ ଛାଗିର ।

ଚରଣ—ବୁନ୍ତ, ବୁନ୍ତ—ଲୋକଙ୍କ ଛୁଣ୍ଟରେ ତ ବୁଏ ଦାଡ଼ ବଢା ହେଉ ନାହିଁ, ଇହ୍ମା ସେ କଥା ନ ଶୁଣିଲେ ଅପର ଗଲ । ବୁନ୍ତ, ବୁନ୍ତ—ମଟେର ଭଣ ଭମ୍ କର ଭଦ୍ରଚନ୍ଦ୍ର କ ହେ—କୁମାରୀ ଘରେ ମୁଁ ରୁକଗ ଭବୁଛୁ ବୋଲି । ଇହ୍ମା, ଗ୍ଳଡ ସେ କଥା ହେ ।

ଫଟେ—ହଜ୍ ଦୋସ୍ତ, ହାମେ ଗୁଲିଲ୍ । ତୁମ ଜପରେ ପୂଗ ଜମୀଦ ରଧୁଲ ।

ଚରଣ—ବୁନ୍ତ ବୁନ୍ତ—ସେ କଥା ଥଜ ଭୁଲିବ ନାଁ ? ହଇ ହେ ତମର ପାଇଁ ସବୁ ମୋର ଏଟେ କଥା । ଇହ୍ମା ତୁମର ସୁପାରିଶରେ ସବୁ ମୋର ଏ ରୁକଗ—ନ ହେଲେ ମରହଟ୍ଟା ଯିବା ପଟେର ମୋର ସବୁ ସବଥିଲ ନାଁ ? ନ ହେଲେ ମୁଁ ଭଏ ଅଜ କୁମାରୀ ଭଏ ?

ଫଟେ—ହଁ ଦୋସ୍ତ ସେ ଲଥିପତ୍ର ଠିକ୍ ଭଣ୍ଡ ଲେଖିଥିବ ।

ଚରଣ—ଧର୍ମଚକ୍ର ପୁଣି ଅଛ ? ହେଲେ କଥାଃଟା ହିଁଏ ଭଗିଛୁ ଗଲ । କୁମାରୀ ଅଛନ୍ତୁ ଭା ହିଁଏ ଦୋପଙ୍କରେ ସଡ଼ ପଇଛୁ । ସେ ବକ୍ସିଟା ପତ୍ର ରେମଣି ହେ । ଯାହା ଧରିଥିବ ଧରିଥିବ ।

ଫଟେ—ଅଜ ଧରିଥିବ । ଅଚ୍ଛା ଦୋସ୍ତ ବକ୍ସି ଭଣ ଗଠେ ପଠାଇଥିଲ ସବୁ ସାଇବ ସାଗରୁ ?

ଚରଣ—ବୁନ୍ତ ବୁନ୍ତ ସାଇବ ପିଲ ସେଏ । ସେ କୁଅଟେ, ସନ୍ଧ, ଭଣ୍ଡର ? ଯାହା ଭନ୍ଦବାର ଭବ ,ନର ବୁଝିଲ ? ଖାଲି ଭଣ ସେଟଭ ? ତା ସାଙ୍ଗରେ ସଜାଲୁ ଧରିବ,

ଜମ୍ବିକୁ ଧରିବ ଆଜ କେଲ୍‌ସିକୁ ଧରିବ । ଦେଖାଯାଉ ଆଜ ଘଡ଼ି । ଟିପ୍ । ହୁଁ……

ଫଟେ—ମନେ ହେଉଛି ତରବର ହେଉଚ ଦୋସ୍ତ ।

ଚରଣ—କୃଷ୍ଣ କୃଷ୍ଣ— ଦେଖ ହେ ଅସଲ କଥାଟା କହୁ ନାହିଁ । ଆମର ନୂଆ ହାକିମ ଆସି ନାହାନ୍ତି—ସେଠେ ଟିକେ—

ଫଟେ—ନୂଆ ହାକିମ ?

ଚରଣ—କଲେକ୍ଟର ସାହେବଙ୍କ ଦେୱାନ କୃଷ୍ଣଚନ୍ଦ୍ର ସ ହ । ଆହା ସତେ ସବୁ କୃଷ୍ଣଚନ୍ଦ୍ର ତ ? ଜାଣିଲ ପିଆଁଧୁଏ ଷଠୀ ଦେୱାନ କର ଚଢ଼ିଥିଲ ତାଙ୍କୁ ।

ଫଟେ—ତାହଁ ହାମ ଜାନଚେତ କୁଛୁ ବାଙ୍କ ନାହିଁ ।

ଚରଣ—ଆଃ ଏମନ୍ତ ବିଚକ୍ଷଣ ଲୋକ ! ତା'ର ଯେମନ୍ତ, ତା'ର ସେମନ୍ତ । ଘର କଲିକତା ମାଟ୍ରିକ ପାଇକପଡ଼ା । ବଙ୍ଗାଳୀ ହେଲେ କଣ ହେବ, ଲୋକଟା ଏକା । ମୁଁ ଗୁରୁ ନାହିଁ, ହାତ ପାଣିଆରେ ବଗବଗ ରଙ୍ଗୁଛି । ଏ ଭେଦ ନ ବୁଝାଇଲେ ବିଦେଶୀ ଲୋକ—ସେ ଜାଣିବେ କପର ? କୃଷ୍ଣ କୃଷ୍ଣ—ସେ କ ମୋ ପର ବଡ଼ ସନ୍ତୁଷ୍ଟ ।

ଫଟେ—ଇଛୁ ଗୋଟାଏ ଫାଇଦା ଉଠେଇ ଲିଅ ।

ଚରଣ—ତାଙ୍କର ଦସ୍ତାବୁ ବଙ୍ଗାପାଠ ଓ ଧାଡ଼ି ଅଭ୍ୟାସ କରୁଛନ୍ତି । ପାଉର ସାଙ୍ଗରେ ଅଛି ଯେତେବେଳେ ଯେତେବେଳେ କଣ ଦର୍କାର ପଡ଼ୁଛ ନାହିଁ । କୁମ ଡାମଟା ତାଙ୍କୁ ଉଛିଆ କରି ଦେଇଛ କେଉଁ ନାଁ ? ହଉ ଯା ବେଳ ହେଲାଣି—ଅନେକ ବସିଥିବେ ମକେ……

ଫଟେ—ହଉ—

( ଉଭୟ ପରସ୍ପରକୁ ଆଲିଙ୍ଗନ କରି ବିପରୀତ ଦିଗକୁ ଗଚ୍ଛ ଚଲେ )

## ୬ଷ୍ଠ ଦୃଶ୍ୟ

( ବରୁଣେଇ ଦୁର୍ଗର ବାହାରେ ତମ୍ବୁପଡ଼ି କ୍ୟାପଟେନ୍ ଟୋମାସଙ୍କ ଶିବିର ହୋଇଛି । ସେହି ଶିବିରର ଏକ କକ୍ଷ । ସମୟ ସଂଧ୍ୟା । କକ୍ଷଟି ଟେବଲ ଲ୍ୟାମ୍ପରେ ଅତି ସମୁଜ୍ଜଳ ଭାବେ ସଜା ହୋଇଛି । କାନ୍ଥକୁ ଲଗ ଥୁଆ ହୋଇଛି କେତେଗୁଡ଼ାଏ ବନ୍ଧୁକ । ଗୋଟାଏ ଟେବୁଲର ପାଖରେ ଥୁଆ ହୋଇଥିବା ମହମବତୀର ଫାଙ୍କ ପାଖରେ କ୍ୟାପ୍ଟେନ୍ ଟୋମାସ ଆସୀନ । ଟେବଲ ଉପରୁ ମଦର ବୋତଲ ନେଇ ସେ ପିଇବାରେ ବ୍ୟସ୍ତ, ହଠାତ୍ କଣ ମନେ ପଡ଼ିଗଲା ପରି ଡାକିଲେ )

ଟୋମାସ—Sepoy—( ସିପାହୀ ପଶି ଆସି ସଲାମ କଲା ) ସବୁ ବନ୍ଦୋବସ୍ତ ଠିକ୍ ହାଏ ।

ସିପାହୀ—ବିଲ୍‌କୁଲ ଠିକ୍ ହେ ।

ଟୋମାସ—Contry କୁ order ଦେ ।

ସିପାହୀ—ଜୀ ହ ଜୁର ।

ଟୋମାସ—ଜର୍ delay ନା ହୋକୁ ।

ସିପାହୀ—( ଝରକା ଟପି ବାହାରକୁ ଚାହିଁଲା ) ସାହେବ ଦୁରସେ ଜନାନା ମାଲୁମ ହୋତା ହେ—

ଟୋମାସ—( ଝରକାରେ ମୁହଁ ଗଳାଇ ) Yes perhaps she is coming—ଅବ୍ ଓ ଆଟା ହେ ?

ସିପାହୀ—ଜୀ ସାହେବ ।

ଟୋମାସ—ଟୁମ ବାହାରକୁ ଯାଓ ଅଡ଼ର୍ ଦେଓ, ଯୈସେ ଓ ବେଗର ମୁସ୍କିଲ୍ ସେ ଇଧର ପହଞ୍ଚପାଏ ।

(ସିପାହୀର ପ୍ରସ୍ଥାନ ପରେ ଥୋମାସ ଅଳ୍ପ ଅଳ୍ପ କରି ମଦ୍ୟପାନ କରିବାରେ ବ୍ୟସ୍ତ ରହିଲେ । କିଛି ସମୟ ପରେ ସେହି ସିପାହୀ ପୁଣି ପଶି ଆସିଲା )

What do you want again ?

ସିପାହୀ—ଓ ଆଣିଛି ।

ଥୋମାସ—( ଅମ୍ନ ଲଂଘ୍ରର ହୋଇ ଉଠିଲେ )

Is that ? Bring her—Bring her······ନେକ୍ଷି ନେକ୍ଷି ଢାମ୍ ନକେ ଯାଏଗା ······ଢାମ ଛୋଡ ଯାଏଗା ।

(ଥୋମାସ ଖୁବ ବେଗରେ ନିଷ୍କ୍ରାନ୍ତ ହେଲେ—ତାଙ୍କ ପଛେ ପଛେ ସିପାହୀ ମଧ୍ୟ । ଦୂରରୁ ଶୁଭିଲା—"who Comes there ?" ଓ କିଛି ସମୟ ପରେ "Passon" । ଅଳ୍ପ ସମୟ ପରେ ପଶିଆସିଲେ ଥୋମାସ ଓ ଲଜ୍ଜା ସଙ୍କୋଚରେ କସ୍ତୁରୀ । କସ୍ତୁରୀଙ୍କର ମୁଖ ମଣ୍ଡଳରେ ଅବଗୁଣ୍ଠନର ଆଚ୍ଛାଦନ । )

ଥୋମାସ—Why shame-why shame ? ତୁମେ ସରମ କରୁଚ କାହିଁକି ସୁଂଦରୀ ।

କସ୍ତୁରୀ—( ମୁହଁରୁ ଅବଗୁଣ୍ଠନ କାଢ଼ି ) ନାଁ

ଥୋମାସ—Oh you are the beauty Baxi has sent to me······beautiful—ତୁମକୁ ବକ୍ସି ପଠାଇଲା ······oh very lovely-Sitdown sit-down······ବୈଠ ଯାଓ······ବୈଠ ଯାଓ······( କସ୍ତୁରୀ ବସିଲେ ) ତୁମେ ଜାଣ କେଉଁ ସବୁଠାରେ ତୁମେ ଅସିଛ ।

କସ୍ତୁରୀ—କେଉଁ ସଠି ?

ଥୋମାସ—ତୁମେ ଏଠି ରହି ରହିବ—ତୁମେ ନାଚିବ—ତୁମେ ଗାଇବ ।

କସ୍ତୁରୀ—ସାହେବ ମତେ ଭୟ ଲାଗୁଛି ।

ଥୋମାସ—What do you mean? ଭୟ କଣ······ତୁମ ପାଖରେ ହାତେମ ଅଛି ····· On you are very-very beautiful । ତୁମେ ଗୁଡ୍ ସୁନ୍ଦରୀ ନା ?

( କସ୍ତୁରୀ ମୁହଁ ତଳକୁ ପୋତି ଦେଲେ )

ତୁମେ dance ଜାନ dance······ନାଚ···ନାଚ···ଥାଗ୍···ଥାଭା···ଥାଗ୍···ଥାଭା···

କସ୍ତୁରୀ—ଜାଣିଛି ।

ଥୋମାସ—ତୁମକୁ ଗାନା ମାଲୁମ ଅଛି ?

କସ୍ତୁରୀ—ଜାଣେ ସାହେବ ।

ଥୋମାସ—Well—ତୁମେ···ସବୁଠୁ ଜାନ ଦୁସ୍‌ମନ Campକୁ କାହିଁକି ଆସିଲ ?

କସ୍ତୁରୀ—ମୋର ଜୀବନ ଅପେକ୍ଷା ମୁଁ ଦୁର୍ଗର ଆଠଣହ ଅଚଳୁଙ୍କ ପାଇକର ପ୍ରାଣକୁ ଅଧିକ ମୂଲ୍ୟବାନ ମନେ କଲି ।

ଥୋମାସ—ତୁମ ସଙ୍ଗେ କଣ୍ଟି Weapon—I mean ଅସ୍ତ୍ର ନାହିଁ ?

କସ୍ତୁରୀ—ପରୀକ୍ଷା କରି ଦେଖନ୍ତୁ ।

ଥୋମାସ—No need—no need—ଦରକାର ନାହିଁ—ତୁମକୁ ପରୀକ୍ଷା କରିବ ? No-no ହାମର ହାତ ଯିବ ନାହିଁ—ହଁ ବସିଲ ହେବେ ଭାଇଁଭ ?—ମତେ ଟିକିଏ ସରାପ୍ ଉଅ···ଉଅ······

( କସ୍ତୁରୀ ବାଧ୍ୟ ଶିଶୁପରି ଯାଇଁ ମଦ୍‌ଭାଣ୍ଡ ଥୋମାସ ହାତକୁ ବଢ଼ାଇ ଦେଲେ—ଥୋମାସ ପିଇ ପିଇ ) ଟୁମେ ଖୁବ୍ ସୁଂଦର··· ଟୁମ ଓଡ଼ିଶାର ଲେଡିସ ଖୁବ୍ ସୁଂଦର···

କସ୍ତୁରୀ—ସାହେବ !

ଥୋମାସ—କୁହ···କୁହ···କନଡ଼ ଚାହେଁକୁ ?

କସ୍ତୁରୀ—ମୁଁ ତ ଅଠରହ ସାଇତର ପାଣ ସାଇଁ ନିଜକୁ ଠେଲି ଦେଲି ତୁମ ପାଖରେ, ତୁମେ ଚାହିଁଲ ଏତେ ବଡ଼ ଦାୟିତ୍ୱ ନେଇ ? ତୁମର ଉପର ହାକିମ ଗ୍ରେଟର ସାହେବ ଯଦି ଏକଥା ଶୁଣନ୍ତି ଯେ ତୁମେ ଗୋଟାଏ ସ୍ତ୍ରୀ ମୋତେ ଏଠିକି ଅଣାଇ ମୁକ୍ତଦ୍ୱାରରେ ଦୁର୍ଗ ମଧ୍ୟକୁ ଖାଦ୍ୟ ଓ ଅସ୍ତ୍ରଶସ୍ତ୍ର ପଠାଇ ଦେଉଛ, ତୁମର ଅବସ୍ଥା କଣ ହେବ ?

ଥୋମାସ—Oh you are toomuch intellegent—ଟୁମେ ଠିକ୍ କହୁଛ—but ମୋର ତ ପୁଣି life ଅଛି··· ଟୁମ ନାମ······

କସ୍ତୁରୀ—କସ୍ତୁରୀ ।

ଥୋମାସ—କସ୍ତୁରୀ—କେତେ ଟେଲ ନାଇ ସାଟ ଦରିଆ ସେ ପାରିରେ ହାମର Mary ରହିଛି··ଆଃ······oh Leave it...We the English people ହାମେ ଦୁଶ୍‌ମନକୁ ଖାଇବାକୁ ନ ଦେଇ ମାରି ପାରୁନାହିଁ।···ହାମେ ଲଢ଼ାଇ କରିବୁ···ଦୁଶ୍‌ମନ ମାରିବୁ···ସେଠିପାଇଁ ଟୁମକୁ ଅଧିକ ଅଉ fort କୁ ଖାନା ପଠାଉଛୁ ·· oh two birds in one short.

କସ୍ତୁରୀ—କିନ୍ତୁ ସାହେବ......

ଥୋମାସ—No, no, no କିନ୍ତୁ...You dance—ତୁମେ ନାଚ...
ତୁମେ ଗାଅ ।

କସ୍ତୁରୀ—କିନ୍ତୁ ସାହେବ ମୁଁ ଗୋଟାଏ କଥା ମାଗିବି ।

ଥୋମାସ—Why one ? ଗୋଟାଏ କାହିଁକି ?

କସ୍ତୁରୀ—ମୁଁ ଫେରି ନ ଯିବା ପର୍ଯ୍ୟନ୍ତ ତୁମ ତରଫରୁ ଗୋଳା ବର୍ଷଣ ହେବ ନାହିଁ...ଯୁଦ୍ଧ ହେବ ନାହିଁ ।

ଥୋମାସ—Right ( ଅଣ୍ଟୁମାଡ଼ି ବସି ) My love—my beauty my girl...I do obey you...ତୁମର କଥା ହାମେ ଅକ୍ଷର ଅକ୍ଷର ରଖିବୁ ( ତାପରେ ସେ ଯାଇଁ ଫୋନର ମୁଣ୍ଡ ଘୁରାଇ ) I commandovr army should not fire a single bullet till this girl returns to their fort (ଦୂରରୁ ଶୁଣାଗଲା-"yes sir") ଥୋମାସ ଫୋନ ପାଖରୁ ଫେରି ଆସି ଏକ ଆସନରେ ବସିଲେ ) କସ୍ତୁରୀ, ହାମେ ଅର୍ଡ଼ର କରିଲା ତୁମେ ରିଟର୍ନ ନ କରିବା ଯାଏ ଏକ ଗୋଳି ଫୁଟିବ ନାହିଁ ।

କସ୍ତୁରୀ—( ମୁହଁରେ ହସ )

ଥୋମାସ—( କସ୍ତୁରୀକୁ ଚାହିଁ ଭାବ ବିହ୍ୱଳ ହୋଇ ପଡ଼ିଲେ ) କସ୍ତୁରୀ ତୁମେ ହାମର ମେମ୍ ହବ ?

କସ୍ତୁରୀ—( ତଳକୁ ମୁହଁ ପୋତି ଲଜ୍ଜିତା ହେଲେ )

ଥୋମାସ—ତୁମେ ମତେ love କରିବ ?

କସ୍ତୁରୀ—ହୁଁ......ସାହେବ ।

ଥୋମାସ—What do you mean by 'ହୁଁ' ତୁମେ ନାଚ...

( କେସୁରୀ ନାଚିବାକୁ ଆରମ୍ଭ କଲେ ଆଉ ସେଇ ନୃତ୍ୟର ତାଳେ ତାଳେ ଗ୍ଲାସ ପରେ ଗ୍ଲାସ ମଦ ବଢ଼ାଇ ଦେଲେ ଥୋମାସ ହାତକୁ । ନାଚର ମଝିରେ ବାହାରୁ ଶୁଣାଗଲା ତୋପ ବର୍ଷଣର ଶବ୍ଦ । ଥୋମାସଙ୍କର ନିଦ୍ରା ଭଙ୍ଗ ହେଲାପରି ସେ ଉଠି ବସିଲେ )

ଥୋମାସ—The Canon firing ! ତୋପ ଲାଗିଲା କିଏ ?

କେସୁରୀ—( କିଛି ନ ଶୁଣିଲାପରି ନାଚୁ ଥାନ୍ତି )

ଥୋମାସ— Stop—Stop—ବନ୍ଦ କର ।

( କେସୁରୀ ତଥାପି ନଶୁଣିଲାପରି ନାଚୁଥାନ୍ତି ପଶିଆସିଲା ସିପାହୀ ।)

ସିପାହୀ—ହଜୁର, ଦୁର୍ଗକା ଦରଓ୍ୱାଜା ଖୋଲକର ଦୁସ୍‌ମନ୍ ଗୁଲି ଚଲାତେ ହୁଏ ଭାଗ ରହେ ହେଁ ।

ଥୋମାସ—You brute ତୁମ୍ ଲୋଗ୍ ସବ୍ କ୍ୟା କରତା ହୈ ?

ସିପାହୀ—ଆପକେ ହୁକୁମ ଦିଏ ବିନା ହାମରା ତରଫ ସେ ଏକ ଗୋଲି ଭି ନେହିଁ ଛୁଟେଗା ।

ଥୋମାସ—No No I Command to arms—to arms—ଲଡ଼ାଇ ସୁରୁ କରୋ ।

( ଥୋମାସ ନିଜର ଆଦେଶ ପାଳନ କରିବାକୁ ହୁଏତ ନିଜେ ଛୁଟି ଯାଉଥିଲେ । କିନ୍ତୁ କେସୁରୀ ସମ୍ମୁଖରେ ତାଙ୍କର ଛିଡ଼ା ହୋଇ ବାଧା ଦେଲେ ତାଙ୍କୁ )

କେସୁରୀ—ଏତେ ଆଶା ଏତେ ସ୍ୱପ୍ନ ବ୍ୟର୍ଥ ହୋଇଯିବ ସାହେବ ?

ଥୋମାସ—My love...କିନ୍ତୁ ଦୁସ୍‌ମନ fortକୁ ପଶିଯିବ ।

କେସୁରୀ—କୁଆଡ଼େ ଯିବ ? ତେବେ ସେ ଅଛି ଏହାର ବନ୍ଦୀଶାଳା ।

ଥୋମାସ—ସୁନ୍ଦରୀ ସ୍ନେହ I have no time ଦ୍ୱାମରୁ ଟାଇମ୍ ନାହିଁ ।

ଚନ୍ଦ୍ରୁସ୍ୱ—କିନ୍ତୁ ସାହେବ ମୁଁ କଣ ଏଇ ବ୍ୟର୍ଥ ଅଭିସାର ନେଇ ଫେରିଯିବି ? ତାହିଁକି ତୁମେ ମୋର ଗୁପ୍ତ ବାସନାକୁ ଜଗାଇଲ ···ତାହିଁକି ?

ଥୋମାସ—(ବିରକ୍ତ ହୋଇ ଉଠିଲେ) ଚନ୍ଦ୍ରୁସ୍ୱ You dance girl

ଚନ୍ଦ୍ରୁସ୍ୱ—ହଁ ସାହେବ—କେତେବେଳ ବା ସେମାନେ ଅଟେଇ ଯିବେ ? ତୁମର ଘୋଡ଼ା ଅଛି, ଗୋଟାଏ ମୂହୂର୍ତ୍ତରେ ତୁମେ ସେମାନଙ୍କୁ ଧରି ଆଣି ବନ୍ଦୀ କରି ପକାଇବ—କିନ୍ତୁ ଏ ମୂହୂର୍ତ୍ତ ଥରେ ଗଲେ ଆଉ ଆସିବ ନାହିଁ ।

ଥୋମାସ—( ବିଚଳିତ ହୋଇ ପଡ଼ି ) Yes ତୁମେ ଠିକ୍ କହୁଛ କିନ୍ତୁ···କିନ୍ତୁ···

ଚନ୍ଦ୍ରୁସ୍ୱ—କିନ୍ତୁ ନୁହେଁ ସାହେବ । ଏଇ ନିଅ ଧର ମୋର ହାତ ଦିଅ ସେଠି ସ୍ନେହ ଭରା ଚୁମ୍ବନ ।

ଥୋମାସ—( ନିଜକୁ ସଂଯତ କରି ନପାରି ଚନ୍ଦ୍ରୁସ୍ୱର ହାତ ଟାଣି ଚପାଇ) ହାଦେ ଉଦ୍ୟାନକୁ ଘଟମ୍ କରି ଓ୍ୟାପସ ଅସ୍ତୁ··· ତୁମେ ଏଇଟି ଠାଅ···ଏଇଟି, My love, my beauty. my godess ( ସେ ଚନ୍ଦ୍ରୁସ୍ୱର ହାତ ଯାଏଁଲ ଉପରେ ଆଙ୍କି ଦେଲେ ଏକ ସ୍ନେହଭରା ବିଦାୟ ଚୁମ୍ବନ···ଅଉ ସଙ୍ଗେ ସଙ୍ଗେ ବଉଳ ଅଭିନାଦରେ ଛିନ୍ନାର ଚଣ୍ଡ ଉଠିଲେ ଏବଂ ଟଲ ପଡ଼ିଲେ ବ୍ୟଥାରେ ଛଟ ପଟ ହୋଇ ) You dance girl ମଟେ ଜହର ଦେଇ my men to arms. to arms ଉଦ୍ୟମନକୁ ଘଟମ କରି···ଇହାଇ

କର ( କ୍ରମେ କ୍ରମେ ଝୋମାଙ୍କର କଣ୍ଠସ୍ୱର କ୍ଷୀଣ ହୋଇ ଆସୁଥାଏ… )

କସ୍ତୁରୀ—ବୃଥା ଚେଷ୍ଟା ସାହେବ । ଓଡ଼ିଆ ଝିଅର ହାତରେ ଚୁମ୍ବନ ଦେବାର ଫଳ କିଏ ଭୋଗ କରିବ ? ସେ ପତ୍ର ବକ୍‌ସିସ ଖସ…ଏଇ ହାତରେ ପତ୍ର ବକ୍‌ସି ବୋଲି ଦେଇଥିଲି… ( ତାପରେ କସ୍ତୁରୀ ହସି ଉଠିଲେ—ସେ ହସରେ ଥିଲା ପ୍ରଳୟର ବହ୍ନି ଶିଖା )

---

# ଦ୍ୱିତୀୟ ଅଙ୍କ

## ୧ମ ଦୃଶ୍ୟ

( ଜେଲର ଦୁଇଟି ପରସ୍ପର ସଂଲଗ୍ନ କୋଠରୀ ସମୟ ସନ୍ଧ୍ୟା । ଗୋଟିଏ କୋଠରୀର ଲୁହା ବେଲ୍‌ଂଧରି ଛିଡ଼ା ହୋଇଛନ୍ତି ଜୟକୃଷ୍ଣ ରାଜଗୁରୁ । ଅନ୍ୟ କୋଠରୀରେ କସ୍ତୁରୀ ମଧ୍ୟ ଠିକ୍ ସେଇପରି ଛିଡ଼ା ହୋଇଥିଲା । ଜୟକୃଷ୍ଣ ରାଜଗୁରୁଙ୍କର ବୟସ କୋଡ଼ିଏ ବର୍ଷ ଅତେଇ ଯାଇଛି ସେମିତ । କସ୍ତୁରୀର ରୂପରେ ମଧ୍ୟ ଆସିଛି ଲକ୍ଷ୍ୟ କଲାଭଳି ମଳିନତା । କସ୍ତୁରୀର କଣ୍ଠରେ ଥିଲା ସଙ୍ଗୀତର ବିଷାଦ ଝଙ୍କାର )

ଅତୀତର କଥା ଏବେ କହିତେ ବ୍ୟଥା
ବାରେ ବାରେ ଜାଗେ ମନେ
ତଳ ବାଦଲ ସାଥେ ଦୂରେ ଯାଏ ସେ ଭାସି
ଚନ୍ଦ୍ରାଲୋକିତ ଲଗନେ ॥

ବାରେ ବାରେ ......

ଯହିଁ ଇଗନ ଦୀପ
ଜଳୁଥିଲା ଅମାପ
ଯହିଁ ତରୁଣୀ କରେ ଅସି ଢାଲ ଚମକ
ଅଭୁଲ ଘାତ ଭର ଜଠର ତାତ
ସ୍ମୃତି ରେଖା ଜାଗେ ମନ ଗହନେ ।
ବାରେ' ବାରେ......

( ସେଇ କରୁଣ ଝଂକାରର ଅବସାନ ପରେ )

କସ୍ତୁରୀ—ସାନ୍ତ୍ରେ ! ( ନୀରବରେ ଶୁଣାଗଲା ଏକ ଦୀର୍ଘ ନିଶ୍ୱାସ ) ଏ ସବୁ କଣ ହେଲା ସାନ୍ତ୍ରେ ? ( ପୁଣି ହେଉ ଦୀର୍ଘନିଶ୍ୱାସ ) ସାନ୍ତ୍ରେ...

ଜୟକୃଷ୍ଣ—( ଚମକି ପଡ଼ି ) ଏଁ...

କସ୍ତୁରୀ—ନିଦ ଆସି ଯାଇଥିଲା ? କେତେ ଡାକିଲିଣି !

ଜୟକୃଷ୍ଣ—ନିଦ ନୁହେଁ ସ୍ୱପ୍ନ... ।

କସ୍ତୁରୀ—ସ୍ୱପ୍ନ ? ଆଃ...( ସେ ଉତ୍ଫୁଲ୍ଲ ହୋଇ ଉଠିଲେ ) ସତେ ସାନ୍ତ୍ରେ ସ୍ୱପ୍ନରେ ବି ଆନନ୍ଦ ଅଛି । କି ସ୍ୱପ୍ନ ?

ଜୟକୃଷ୍ଣ—ବରୁଣେଇ ଦୁର୍ଗ ଫିରିଙ୍ଗୀ ଅବରୋଧ କଲେ । ଦିନେ ଗଲା, ଦୁଇ ଦିନ ଗଲା......ଏକୋଇଶ ଦିନ ଗଲା...... କ୍ରମେ ସରି ଆସିଲା ଖାଦ୍ୟ...ଯୁଦ୍ଧ ସାମଗ୍ରୀ, ଆଉ ସର୍ବଶେଷରେ ପାଇକର ମନରୁ ଉତ୍ସାହ । ସଙ୍କୁଚିତ ସଙ୍କଟାପନ୍ନ ହେଲା । ଗୁମ୍ଫ ଅନ୍ୟ ଦିନସ୍ତ......ଚିତ୍ତବୈର୍ଯ୍ୟ ଭୁଲାଇବାକୁ ଅକ୍ଷମ । ତା ପରେ, ହଁ......ତା ପରେ ମନ୍ତ୍ରୀ ଆଉ ଦଳପତିଙ୍କ ମଧ୍ୟରେ ମତଭେଦ ହେଲା । କୌଶଳୀ ଫିରିଙ୍ଗି, ଷଡ଼ଯନ୍ତ୍ର ଯାଇ ବଶତେ ଅଧିକାର ଦେଇକଲେ ନା ଯେ ଦୁର୍ଗ ଭଲ

ଦୁର୍ଗେଁ...ତାଙ୍କୁ ମନ୍ତ୍ରୀ ଭୁଲ ବୁଝିଲେ ଗୋଟାଏ ଭୁଲ ମୁହୂର୍ତ୍ତର ପ୍ରସ୍ତାବରେ । ଫଳରେ ବକ୍ସିଙ୍କର କୌଶଳ ଉପଯୁକ୍ତ ହେଲା ବୋଲି ମନ୍ତ୍ରୀ ଆଜ ପ୍ରମାଣ ତାର ସୁଯୋଗ ନେବାକୁ ହେଲେ ଅସମର୍ଥ ।

ଚନ୍ଦ୍ରମା—ଏତ ସ୍ୱପ୍ନ ନୁହେଁ ସାନ୍ତେ । ସବୁଦିନେ ଏଇ କଥାହିଁ ଆପଣ କହୁଛନ୍ତି ।

ଜୟକୃଷ୍ଣ—ଅଚ୍ଛା ଚନ୍ଦ୍ରମା, ଯେମାନଙ୍କୁ ଯଦି ପାର ଗାବ ନ ଥାନ୍ତୁ ।

ଚନ୍ଦ୍ରମା—ହାତେବେ ମୋର ଉଦ୍ଧାର ଥିଲା—କୌଣସି ଅତ୍ୟାଚାର ପୂର୍ବରୁ ସେଇଅଙ୍କୁ ଓଠରେ ଦେଇ ନିଜେ ମରିଥାନ୍ତି । ବକ୍ସି ସାଅନ୍ତେ ତ ମତେ ସେଇଥ କହିଥିଲେ ।

ଜୟକୃଷ୍ଣ—ଧନ୍ୟ ବକ୍ସି, ତୁମେହିଁ ବଗଟ, ତୁମେହିଁ ମହତ । ସେନାପତିର ଉପଯୁକ୍ତ ତୁମେ—ମାନ ।

ଚନ୍ଦ୍ରମା—ସ୍ୱପ୍ନ କଥା ତ କହିଲେ ନି ସାନ୍ତେ ।

ଜୟକୃଷ୍ଣ—କହିବି...ହଁ...ଫିରିଙ୍ଗି ଲେଖର ମେଘନାଦ ପାଗିଣ୍ଡି ଝିପେଇ ବକ୍ସି ଲୋକ ପଠାଉଛନ୍ତି ଆମକୁ ମୁକ୍ତ କରିବାକୁ ।

ଚନ୍ଦ୍ରମା—ସତେ ସାନ୍ତେ, ସତେ ( ଆନନ୍ଦରେ ନାଚି ଉଠିବାକୁ ଲାଗିଲେ )

ଜୟକୃଷ୍ଣ—( ଚନ୍ଦ୍ରମା କଣ୍ଠରୁ ଚଞ୍ଚଳତା ବୁଝିପାରି ) ସତ୍ୟ ନୁହେଁ ସ୍ୱପ୍ନ ( ସେ ଅବଶ ହୋଇ ବସି ପଡ଼ିଲେ )

ଚନ୍ଦ୍ରମା—ସ୍ୱପ୍ନ ! ( ସ୍ୱପ୍ନ କଥା ଶୁଣି ଅବଶ ହୋଇ ବସି ପଡ଼ିଲେ ଜଣ୍ଡ ସମସ୍ତ ନୀରବରେ କଟାଇ ଦେଲେ—ସେଇ ମଧ୍ୟ-ବର୍ତ୍ତୀ ସମୟରେ ଧୂର୍ତ୍ତ ଶୁଣାଗଲା ଇଂରେଜ ସିପାହୀମାନଙ୍କ ଗୀତର ଦେଂଶମାନ )

ଲସ୍ତୁଗ—ସାନ୍ତ୍ରେ ! ଅଉ କେତେ ଦିନ ?

ଜୟକୃଷ୍ଣ—କେତେ ଦିନ ? ( ହସିବାକୁ ଲାଗିଲେ )

ଲସ୍ତୁଗ—ସାନ୍ତ୍ରେ !

ଜୟକୃଷ୍ଣ—ଅଃ·· ଭାରି ଶୋଷ···ଲସ୍ତୁଗ ଭାରି ଶୋଷ···

ଲସ୍ତୁଗ—ଶୋଷ ? ପାଣି ଆଣିବି ସାନ୍ତ୍ରେ···

ଜୟକୃଷ୍ଣ—ସତେତ···ଆଣିବୁ ପାଣି ? ···ହଁ ପଚାରୁଥିଲୁ ନା କେତେ ଦିନ ? ବେଶୀ ଦିନ ନୁହଁ ।

ଲସ୍ତୁଗ—ସାନ୍ତ୍ରେ ?

ଜୟକୃଷ୍ଣ—ହଁ ବେଶୀଦିନ ନୁହେଁ । ବଗ୍ଗୁଚର ଯେଉଁ ପ୍ରହସନ ହେଉଛି···ଶେଷ ମୀମାଂସା ତାର ଅଜ ହେଉ ନ୍ତ୍ରଦେ—ମୁଁ ଜାଣେ ଫେଙ୍ଗେ ବଗ୍ଗୁରର ଚୂଡ଼ାନ୍ତ ନିଷ୍ପତ୍ତି ମୃତ୍ୟୁ··· । ଭୟ ନାହିଁ—ମା ପାଇଁ ମୃତ୍ୟୁ ବରଣ କରିବାରେ ଯେଉଁ ଗୌରବ ଅଛି, ସେ ଗୌରବରେ ଦୀପ୍ତ ଆଜି ମୁଁ । କିନ୍ତୁ ମା' ମୋର ଯଦି···ନାଁ ନାଁ···ଲସ୍ତୁସ···ଖୋର୍ଦ୍ଧା ଭୂଇଁ ଆଜି ଶେଷ ଭରସା ରଖିଛି ତାର ବକ୍ସିଠାରେ । ଭାଗ୍ୟକୁଞ୍ଜ ବନ୍ଦୀର ଶେଷ ଅବକାଶ—ମୁକ୍ତ ବକ୍ସିର ଦୁର୍ବଳ ମୂହୂର୍ତ୍ତି ଗୁଡ଼ିକ ଜଗନ୍ନାଥ ସତେଜ କରି ଦିଅନ୍ତୁ ।

ଲସ୍ତୁସ—ମନ ଫଳ ଫଳିବ ସାନ୍ତ୍ରେ ।

ଜୟକୃଷ୍ଣ—ଫଳିବ ! ଫଳିବ ! ଜୟ ଜଗନ୍ନାଥ ଜୟ ଜଗନ୍ନାଥ । ଖୋର୍ଦ୍ଧାର ଜୟ ହେଉ ( ସେ ଅନନ୍ଦରେ ଚିତ୍କାର କରିବାକୁ ଲାଗିଲେ । ପଶିଆସିଲ ଯୋଡ଼ାଏ ସିପାହୀ )

ସିପାହୀ—( ଦ୍ୱାର ଖୋଲି ) Come on ସାହେବ ଡାକୁଛନ୍ତି । ( ଲସ୍ତୁଗଙ୍କୁ ଲକ୍ଷ୍ୟ କରି ) ତୋର ଯାଇବାକୁ ଆସି ନାହିଁ ? ପଡ଼େଇ ଡାକୁଛି··· ( ସେ ଜୟକୃଷ୍ଣଙ୍କୁ ସାଙ୍ଗରେ ନେଇ-

ଗଳ୍ପ—କିଛି ସମୟ ପରେ ଖାଦ୍ୟନେଇ ଛଦ୍ମ ସିପାହୀର ବେଶରେ ଆସିଲେ ଶ୍ରୀଧର )

ଶ୍ରୀଧର—ଜହ୍ନୁସିଂ ।

ଜହ୍ନୁସିଂ—ଏଁ କିଏ ମତେ ନାଁ ଧରି ଡାକିଲା ?

ଶ୍ରୀଧର—ଚୁପ୍ ଚୁପ୍ ମୁଁ ଶ୍ରୀଧର, ଯୋଗୀ ପାଠର ଲୋକ...ତୁମ-ମାନଙ୍କୁ ମୁକୁଳେଇ ନେବାକୁ ଆସିଛି ।

ଜହ୍ନୁସିଂ—ମୁକୁଳେଇ ନେବାକୁ । ନୂଆ ନୂଆ ଅତ୍ୟାଚାର...ନୂଆ ନୂଆ ଖେଳ...ମୁକୁଳେଇ ନେବାକୁ ? ଫେଲ୍ଟର ସାହେବ ଖାଲି ଦେଖଣା ନାଁ ? ନଖରେ ଛୁଞ୍ଚି ଫୋଡ଼େଇବା...ଦେହରେ ନିଆଁ ଖୁଣ୍ଟା ଚେପିବା—ନାଗଫେଣିଆ କଣ୍ଟାରେ ଗଡ଼େଇବା ।—ଏ ସବୁତ ଦେଖା ଯାଇଛି । ଆଉ କଣ ? ମୁକୁଳେଇବାକୁ ଆସିଛ ? ( ହସିଲେ )

ଶ୍ରୀଧର—ବିଶ୍ୱାସ କର । ହସନା—କିଏ ଶୁଣିବ । ପଞ୍ଚାଏ ଆମେ ମେଣ୍ଟ ବାନ୍ଧି ତୁମମାନଙ୍କୁ ଖସେଇ ଦେବାର ଚେଷ୍ଟାରେ ଲାଗିଛୁ । ବହୁ କଷ୍ଟରେ ସିପାହି ସାଜି ମୁଁ ଏଠାକୁ ଆସିଛି । ଭାର୍ଗାନ୍ତ ମଲ୍ଲୀ ?

ଜହ୍ନୁସିଂ—ସେଇ ବୁଢ଼ା ?

ଶ୍ରୀଧର—ହଁ...ଭାର୍ଗାନ୍ତ ମଲ୍ଲୀ...

ଜହ୍ନୁସିଂ—ସାହେବର ଦପ୍ତରକୁ ଯାଇଛନ୍ତି ।

ଶ୍ରୀଧର—ସାହେବର ଦପ୍ତରକୁ... ! କିଏ ଜାଣେ କଣ ହେବ... !

ଜହ୍ନୁସିଂ—(ଚମକି ପଡ଼ି ) ଏଁ...

ଶ୍ରୀଧର—ଠିକଭାବେ ଚେତ ହୋଇ ଗଳ-ହତ ଭାଗ୍ୟରେ ଯାହା ଥିବ ।

ଖାଲି ପଦାରେ ନାରାୟଣ ହେବା ଛଡ଼ା ଲୋକେ ଆଉ କିଛି ନୁହେଁ ।

ସାବିତ୍ରୀ—ମୁଁ ମାଇପି ଲୋକ ସେସବୁ କଥା କଣ ଜାଣେ ?

ମଦନ—ଜାଣିନୁଁ ତ ତୋର ଉପରେ ନଳିତା ବନ୍ଧା ଅଛି ଚାହିଁକି ନହୁଛୁ ।

ସାବିତ୍ରୀ—ତଥା କଣ ସଫା ସଫା ନ କହୁ ଏତେ ବଙ୍କେଇ କର କହୁଛୁ ବା ।

ମଦନ—ଚାହିଁକ ! ଏତ ସଫା କଥା—ସେ ନିଷ୍ଠାଙ୍କଠାକୁ ବାହାର କରି ଦେ—

ସାବିତ୍ରୀ—ସତେ ଏବେ ? ଭୂଆସୁଣୀ ଙ୍କୁ ଅଷ୍ଟାଏ—ତପର ଉପରେ ଭରସା କରି ଏଠି ଥଇଥାନ ହେଉଛି—ଲେମ କହୁଛ କଣ ନାଁ ?

ମଦନ—ତୁ ସେ ସବୁ ବୁଝୁ ନୁଁ ତା ବନ୍ଧାବାରେ ବେଁ ଅଛି—ତଥାଟା ଯଦ ଜଣା ପଡ଼େ ଏ ମୁଣ୍ଡ ଆଉ ରହିବ ନାହିଁ ।

ସାବିତ୍ରୀ—ପାଇଚର ମୁଣ୍ଡ କାଟି ନଚ ଏମିତ ବାଘର ପୁଅ କିଏ ଅଛି ବା ?

ମଦନ—ଥଲେ ଆମର ଆଉ ଅଛି କଣ ? ଆର ମେଳ ପରେ ଅଠଦଶ ପାଣ ନିସ୍ତର ଜାଗିସ୍ ଯାହା ଥିଲା, ଗାଳୁଚ ଫେରଙ୍ଗି ନେଲା । ବାଡ଼ି ଗୋବରେ ଗୋଟେ ଯାହା ଥିଲା ତା ଉପରେ ଚସିଲ କଚ । ଆଉ କଣ ଜୀବନ ଅଛି ?

ସାବିତ୍ରୀ—ସେ ସବୁ ନାକ ସକ ସଚ କଥା ରଖି ଦେଇଥା ।

ମଦନ—ମୋ କଥାରେ ଅମାନିଆ ହ ନାହିଁ ସାବି···ତାକୁ ବିଦା-କର ଦେ । ସେ ଚାଲି ଯାଉ ।

ସାବିତ୍ରୀ—କଣ କହୁଛ ! ଖଦା କର ଦେବ ? ସେ କଥା ହେବ ନାହିଁ ।

( ସେ ଚାଲି ଯାଉଥିଲା । )

ମଦନ—( ଫେର ଚକାଇ ) ଏ—ହେଉଛି ଶୁଣିସାରି ··ଏଇ ସେ ସାଇବଙ୍କୁ ମାର ଦେଇଥିଲ । ଏବେ ପୁଣି ଗାଦରୁ ଚାଲି ଅସିଛୁ ।

ସାବିତ୍ରୀ—ଆସିଲ ନ କଣ ହେଲ ? ତୁମେ ସବୁ ଧନେ ଶୁଆରଙ୍କ ଦଳରେ ଥିଲ ? ଏତେ ବେଗେ ଭୁଲିଗଲ ? ଉପର ଭରସାରେ ସବୁ ଦେ ଦୋକଠାରୁ ଏଇଠିକୁ ପଠାଇ ଦେଲେ ।

ମଦନ—ଅଛ ଭରସା ! ଅରପେଲାରେ ଫିରଙ୍ଗି ଫୌଜ ଗଡ଼ ଘେରିଛନ୍ତି ଘଣା ଏତାବେଳକେ ଭାଙ୍ଗିଯାଇଛି । ଏଇତ ସାରି, ମୁଁ ଧାଇଁ ଆଗେ ଯାଉଛି । ମୁଁ ଫେରିଲା ବେଳକୁ ସେ ଯେମିତି ନ ଥାଏ । ନ ହେଲେ ସିପେଇ ଡାକ ଧରେଇ ଦେବ ( ଚାଲି ଯାଉଥିବ )

ସାବିତ୍ରୀ—( ମଦନର କଥା ସହିପାରିଲା ନାହିଁ ) ହେଉଛି ମୋର ବି ଜାନଟର ଗଣ୍ଠି ରହୁବ ........ଦେଖିବ କୋଉ ସିପେଇ ଆସି ତାକୁ ଧରିବ ।

ମଦନ—ଅଛା......( ପ୍ରସ୍ଥାନ )

ସାବିତ୍ରୀ—ମା ବରୁଣେଇ ଜାଣନ୍ତୁ ଏ ମିଣିପଟାର କଣ ହୋଇଗଲା ( ପ୍ରସ୍ଥାନ )

# ୩ୟ ଦୃଶ୍ୟ

( ରାତ୍ରି—ପ୍ରାନ୍ତର ମଧ୍ୟସ୍ଥ ଏକ ବଟ ବୃକ୍ଷତଳେ ଦେବାନ୍ କୃଷ୍ଣଚନ୍ଦ୍ର ଦଣ୍ଡାୟମାନ । ବୃକ୍ଷଅନ୍ତେ ଫର୍ଗିନଧାରୀ ସିପାହୀର ଦଳ । ଗୋଟାଏ ଗର ଭେତରୁ ପାଣି ଦରକଢ଼ା ପିଟାଇ ସିପାହୀମାନେ ଶଂଟାକୁ ଚେଷ୍ଟ ଅନନ୍ତ ନେଇଗଲେ । ଦୂରରୁ କୁକୁର ଓ ଶିଆଳମାନଙ୍କର ବିକଟ ଚିତ୍କାର ଶୁଣା ଯାଉଥାଏ )

କୃଷ୍ଣଚନ୍ଦ୍ର—ଚରଣ ପଟ୍ଟନାୟକ······ଚରଣ ପଟ୍ଟନାୟକ ।

ଚରଣ—( ପ୍ରବେଶ କରି ) ଆଜ୍ଞା ମତେ କଲ ( Call ) କଲେ ? କିଛି ଟକ୍ ( Talk ) ଅଛନ୍ତି କି ?

କୃଷ୍ଣଚନ୍ଦ୍ର—ତୁମେ ଚରଣ ଏ ସବୁକ ଇଂଲିଶ କଥା ବନ୍ଦ କର । ····· ହଁ । କାଲ୍ ଜ୍ୟାମତ ଗୁଳିଛ ?

ଚରଣ—ତା' ଯେମିତ ଗୁଳିବା କଥା ସେମିତ ଗୁଳିଛି । ··· ତା ନ ହେଲେ କ ବାନ୍ଧି ଯାଇଜଡ଼ା ଲୁଣ୍ଠି ଆସିଥାନ୍ତେ ଏଠି ହାକମ ଦେଖାକୁ ।

କୃଷ୍ଣଚନ୍ଦ୍ର—ତୁମି ଭାବ ପଟ୍ଟନାୟକର ବ୍ୟାଟା ଚରଣ ପଟ୍ଟନାୟକ, ତୁମି ଠିକ୍ ଅଛ ।

ଚରଣ—ଆଜ୍ଞା ମୁଁ କହୁଥିଲି କଣ କି ··· କେତେବେଳେ ବୋଲି କଥା······ଏଇଭିଷ୍ଟୁପିଡ୍ (Stupid) ମ୍ୟାନ ( man ) ଗୁଡ଼ାକ ଯଦ ୟାରସେମଲ୍ (Smell)ମାନେ ଗନ୍ଧ ପାଇବେନ—

କୃଷ୍ଣଚନ୍ଦ୍ର—କି କହିଲ ? ଲୋକେ ପାଇଲେ କି ହବ ? ଏଇ ପାଞ୍ଚ ଦଶଟା ଲୋକର ପାଣିକ ?··· Sepoy···ଜୟକୃଷ୍ଣ ରାଜଗୁରୁ ।

ସିପାହୀ—ହଜୁର ( ଦୁଇଜଣ ସିପାହୀ ଗୁଳିଗଲେ )

କୃଷ୍ଣଚନ୍ଦ୍ର—ଚରଣ—ସୁବିଧାରେ ଫାଶୀର ଠିକ୍ ଗାର୍ଡ଼ ଅଛନ୍ତି ?

ଚରଣ—ଆଜ୍ଞା ଅ୍ୟାଣ୍ଟ ( ant ) ଚାଲିବାକୁ ରୋଡ଼ ( road ) ନାହିଁ ।...ମାନେ ପିମ୍ପୁଡ଼ି ଗଲି ପାରିବେ ନାହିଁ ।

କୃଷ୍ଣଚନ୍ଦ୍ର—ତା' ହେବେ ନାଁ ତୁମେ କାହାକୁ ପାଇଁ ଉଦାରଣ କର । ତୁମି ଜାନନା—ଏ ବେଙ୍ଗଦେଶର ବଷ ଆଛେ ... ହଠାତ୍ ଓଙ୍ଗପାଇର ମତ ଯଦ ଏଖାନେ ଆସିଯାଏ । ... ତେବେ ହଏଛେ ।......

ଚରଣ—ଆଜ୍ଞା ଅତଶ କଣ୍ଟୁ ଥିଙ୍କ୍ (think ) କରନ୍ତୁ ନାହିଁ । ମୁଁ ଯାଇଁ ଦେଖୁଛି । ( ପ୍ରସ୍ଥାନ ଓ ସିପାହୀ ବେଷ୍ଟିତ ଜୟକୃଷ୍ଣ ପ୍ରବେଶ )

କୃଷ୍ଣଚନ୍ଦ୍ର—ଅପନା ରାଜଗୁରୁ ଜୟକୃଷ୍ଣ ମହାପାତ୍ର, ଖୋର୍ଦ୍ଧା ରାଜାଙ୍କର ମନ୍ତ୍ରୀ ?

ଜୟକୃଷ୍ଣ—କଣ କହିବାକୁ ଚାହାନ୍ତି ?

କୃଷ୍ଣଚନ୍ଦ୍ର—ଫାଶୀର ପୂର୍ବେ ଆପନ୍ ଯଦ ଦୋଷ ସ୍ୱୀକାର କରେ ଯାନ୍ତୁ ।...

ଜୟକୃଷ୍ଣ—ଦୋଷ ! କେଉଁ ଦୋଷ ? ବିଦେଶୀ ଶାସନରୁ ମୋର ପ୍ରିୟ ଭୂମି ଖୋର୍ଦ୍ଧାକୁ ମୁକ୍ତ କରିବା ପାଇଁ ମୁଁ ଯେଉଁ ଚେଷ୍ଟା କରିଥିଲି ତାକୁ ଲକ୍ଷ କରି କହୁଛନ୍ତି କି ?

କୃଷ୍ଣଚନ୍ଦ୍ର—ଦେଖୁନ୍ — ଆପନଙ୍କର ବିରୋଧନ୍ ଲୋକେର ଜ୍ଞାନ୍ ନଷ୍ଟ କରତେ ମୁଁ ଜାନିତ ମନେ କରିନେ... କିନ୍ତୁ କମ୍ପାନୀ ବାହାଦୁରର ବିରୁଦ୍ଧରେ ଯେ ଷଡ଼ଯନ୍ତ୍ର କରିଥିଲେନ୍ ତାର ଜେ ରାଜଦ୍ରୋହ ଫ୍ରେଞ୍ଚର ସାହେବର ହସ୍ତଗତ—ଦସ୍ୟୁଛି ମୁଁ ତାର କି କରିତେ ପାରିବ ? ତଥାପି ଅପର୍ଣ୍ଣ ଦୋଷ ସ୍ୱୀକାର କରିଲେ ମୁଁ

ଅପନ୍‌କର ପ୍ରାନ୍ ନେଓଇବାର ଚେଷ୍ଟା କରେ । ଅମିଓ ତ
ଅପନାର ଦେଶେର ଲୋକ୍ ।

ଜୟକୃଷ୍ଣ— କୃଷ୍ଣଚନ୍ଦ୍ର... କଣ୍ଠାଘାତରେ ଲବ୍ଧ ଛୁଟା ଆଜ ଦଅ ନାହିଁ । ତୁମେ ସବୁ ଦେଶୀ ଲୋକ ସୁନାର ଭାରତକୁ ବିଦେଶୀର ପାଦତଳେ ବିକିଦେଲ... ତୁମର ସଫେଇ ଶୁଣିବାକୁ ଆଜି ଆଜ ସମୟ ନାହିଁ । ଶୃଙ୍ଖଳାର ନାମରେ ଫିରିଙ୍ଗି ଯେଉଁ ଶୃଙ୍ଖଳର ସୃଷ୍ଟି କରନ୍ତି.....ଯେଉଁ ଯୂପ ପ୍ରସ୍ତୁତ କରନ୍ତି ସେଥିରେ ମୁଁ ମୋର ରକ୍ତ ଅଭାବରେ ଢାଲ ଦେଉଛି । ଆଜ ତୁମେ କୃଷ୍ଣଚନ୍ଦ୍ର, ନବକୃଷ୍ଣରାମ ଗୋଲାମର ଦଲ ଦେଖିବ ସେଇ ମଣି ରକ୍ତ ଫଳେ କାଇ ଉଠିବ କପର ?

କୃଷ୍ଣଚନ୍ଦ୍ର—ଚୁପ୍ କର, ଏତେ ସବ ଦୁଏକ ତର୍କ ମୂର୍ଖଙ୍କୋର ସ୍ଥଗନ ... ଶେଷ କଥା କିଛୁ କହିତେ ଅଛେ ?

ଜୟକୃଷ୍ଣ—ନାଁ...

କୃଷ୍ଣଚନ୍ଦ୍ର—ତା' ହେଲେ ମହାମାନ୍ୟ ନେପୋରର ଆଦେଶର ଏ ଦୁର୍ଦ୍ଦଶାରେ ଶୋକ ପ୍ରକାଶ କରେ ଏକ ବାର୍ତ୍ତା ପାଠିଏଛେନ୍ ଶୁନୁନ୍—

ଜୟକୃଷ୍ଣ—ଆବଶ୍ୟକ ନାହିଁ ।

କୃଷ୍ଣଚନ୍ଦ୍ର—ତା କପର ହବେ ? ହାକିମେର ହୁକୁମ । ( କାଗଜ ପଢ଼ିବାକୁ ଲାଗିଲେ ) ଖୋର୍ଦ୍ଧାର ଅଧିବାସୀଗଣ ! ଆପଣ-ମାନେ ଜାଣନ୍ତି ଯେତେବେଳେ ଅଯୋଗ୍ୟ ମହାରଜାର ଲୁଣ୍ଠନ ଆଉ ଅତ୍ୟାଚାରରେ ଖୋର୍ଦ୍ଧାରେ ମୃତ୍ୟୁର ଶେଷ ଲକ୍ଷଣ ସ୍ପଷ୍ଟ ଅନ୍ବେଷଣ ପଡ଼ିଲ ସ୍ଥାପିତ ଥିଲା— ସେତେବେଳେ ଆପଣ କରୁଣାମୟ ପ୍ରଭୁଙ୍କର କୃପାରୁ ଇଂରେଜମାନେ ଏଠି ଆସି ପାଦ ଦେଲେ । କିନ୍ତୁ କେତେକ ଖଳ ପ୍ରକୃତିର

ଲୋକେ ନିଜର ସ୍ୱାର୍ଥଦୃଷ୍ଟିରୁ ଇଂରେଜମାନଙ୍କୁ ବାଧା ଦେଇ ପ୍ରଭୁଙ୍କର ଇଚ୍ଛା ପୂରଣରେ ବାଧା ହୋଇଥିଲେ । ଆପଣଙ୍କର କଲ୍ୟାଣ ପାଇଁ ମୁଁ ସେମାନଙ୍କୁ ଦଣ୍ଡ ଦେଇଛି । ମୁଁ ଜାଣେ ଆପଣମାନେ ସେଥିରେ ଏକମତ । ସେମାନେ ଇଂରେଜଙ୍କର ଶତ୍ରୁ ନୁହନ୍ତି ... ଆପଣମାନଙ୍କର ମଧ୍ୟ ଶତ୍ରୁ । ମୁଁ କିନ୍ତୁ ଦୟାପରବଶ ହୋଇ ସେମାନଙ୍କ ମଧ୍ୟରୁ ଯେତିକି ପାରେ ସେତିକି ଲୋକଙ୍କୁ ଖଲାସ ଦେଇଛି । ଏପରି କି ମେଲିଆ ନେତା ବକ୍ସିଙ୍କୁ ମଧ୍ୟ ଫାଶି ଦିଆଯାଇ ନାହିଁ । ଇଂରେଜ ତାଙ୍କର ଶିର ନୁହେଁ କର ଲୋଡ଼ୁଛି । ଆଜି ଯେଉଁମାନେ ଫାଶୀ ପାଇଛନ୍ତି ସେମାନଙ୍କ ପାଇଁ ମୋର ଦୁଃଖର ସୀମା ନାହିଁ । ସେହି ଦୁଃଖରେ ମୁଁ ସେହି ଶୋଚନୀୟ ଘଟଣା ସ୍ଥଳରେ ଉପସ୍ଥିତ ରହି ପାରୁନାହିଁ । ମୁଁ ସେମାନଙ୍କ ପାଇଁ, ସ୍ୱଦେଶ ଭକ୍ତଙ୍କର, ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କ ପାଇଁ, କରୁଣାମୟ ମଙ୍ଗଳ ଦାତା ପ୍ରଭୁଙ୍କ ପାଖରେ ଜଣାଣ କରୁଛି ସେମାନଙ୍କ ଆତ୍ମାର ସଦ୍‌ଗତି ହେଉ ।

ଇତି

ଖୋର୍ଦ୍ଧାର ବିନୀତ ସେବକ

ମେଜର ଫ୍ଲେଚର

ଜୟକୃଷ୍ଣ—( ବିଦ୍ରୂପ ହସ ହସି ଉଠିଲେ ) ତୁମର ମେଜର ଫ୍ଲେଚରଙ୍କୁ ଏଇ ମୋର ମୋର ଜବାବ ... ଏଇ ମୋର ଜବାବ ।

କୃଷ୍ଣଚନ୍ଦ୍ର... Sepoy...

ସିପାହୀ—ହଜୁର !

( ସିପାହୀ ତାର କାମ କରିବାକୁ ଅଗେଇ ଗଲା )

ଜୟକୃଷ୍ଣ—ମୋର ଶେଷ ସମୟ ହୋଇ ଆସିଲା ବନ୍ଧୁ—ମୁଁ ତୁମକୁ ଭୁଲ ବୁଝିଥିଲି । ତୁମର ଯେପରି ଶେଷ ନ ହୁଏ… ଗଜପତିଙ୍କର ଜୟ ହେଉ … ଖୋର୍ଦ୍ଧାର ଜୟ ହେଉ…

( ସେତେବେଳକୁ ତାଙ୍କର ବେକରେ ଫାଶୀ ଦଉଡ଼ି ଲଗି ଯାଇଥିଲା । )

କୃଷ୍ଣଚନ୍ଦ୍ର—ଥପି ଅମାର ଚୈତନ୍ୟ ଖାଇନ୍ କରେଛେ ପ୍ରଭୁ !

( ପ୍ରଣାମ କଲେ )

## ୪ର୍ଥ ଦୃଶ୍ୟ

( ସଦନଙ୍କ କୁଟୀର । ସାବିତ୍ରୀ ଗୃହ କର୍ମରେ ବ୍ୟସ୍ତ । ସଦନ ଗୋଟାଏ ଖଣ୍ଡା ଧରି ବାହାରି ଯାଉଥିଲା । ]

ସାବିତ୍ରୀ—ଓ ହୋ ସକାଳୁ ଏ ଅଖି କଣ ନ ଦେଖିଲି । ପୁଣି କଣ କେଉଁଠି ମେଳ ଆରମ୍ଭ ହେଲାଣି ନା କଣ ?

ସଦନ—ହୁଁ…କଣ କହୁଛୁ ?

ସାବିତ୍ରୀ—ସକାଳଟାରୁ କୁଆଡେ଼ ବା ?

ସଦନ—କୁଆଡ଼େ ? ଗୋଟାଏ ଭଲ କାମରେ ଥରେ ବାହାରିଲା ବେଳକୁ ପଛରୁ ନ ଡାକିଲେ ପେଟରେ ଖାଉ ହଜମ ହୁଏ ନାହିଁ ନା ?

ସାବିତ୍ରୀ—ଆଜିକାଲି ତୁମର କଣ ହୋଇଛି କେଜାଣି ? ଖୁସିରେ ସବୁ କଥା ପଚାରିଲେ ଖାଲି ଟାଉଁ ଟାଉଁ ଗଉଁ ଗଉଁ ।

ସଦନ—ହଉ, କଣ ପଚାରୁଛୁ ପଚାର ।

ସାବିତ୍ରୀ—ନାହିଁ ମୁଁ କଣ କହୁଥିଲି କି ?

ସଦନ—କଣ ?

ସାବନ୍ତୀ—ଏଇ ଗଣ୍ଡାଟା ନେଇ ବାହାରନ୍ତୁ ଯେ, ସତରେ କଣ କେଉଁଠି ନହେଲ ନାଗିଲାଣି ?

ସଦନ—ହଁ ଏଇ ପେଟ ଭିତରେ । ଅଜ୍ଞ ଏଇଟାକୁ ବନ୍ଦିକରି କେଉଁଠୁ ଦି'ପଇସା ନ ଆଣିଲେ ଗତକୁ ଠକ୍ ଠାକ୍ ।

ସାବନ୍ତୀ—ଏଇଥି ପାଇଁ ବାପ ଅଜାଙ୍କ ଅମଳର ଗଣ୍ଡାଟାକୁ ତେମେ ବିକିବ ?

ସଦନ—ପେଟ ଯୋଉଡ଼ଗଡ଼ଲେ ଅଉ ବାପ ଅଜା···

ସାବନ୍ତୀ—ତମ ଗୋଡ଼ତଳେ ପଡ଼ୁଛି ତୁମେ ଆଉ ଏ ଲକ୍ଷ୍ମୀଛଡ଼ା କଥାଗୁଡ଼ା ତୁଣ୍ଡରେ ଧରନା ।

( ବାହାରୁ ଡାକ ଶୁଭିଲା )

ବାହାରୁ—ସଦନ ଭାଇ ଘରେ ଅଛ—

ସଦନ—କିଏ ବଇଜୁ ?

ବାହାରୁ—ହଁ ଭାଇ ଦେଖିଲ ନାଇଁ ?

ସଦନ—ନଇଛି ( ପ୍ରସ୍ଥାନ )

ସାବନ୍ତୀ···( ସେଇ ଆଡ଼କୁ ଅନେଇ ) ମା ବିରୁଣେଇ ! ଦେଖୁଛୁ ତୋ ପାଇକ ପୁଅଙ୍କ ଦଶା ।

ବନ୍ଧୁସ···( ପଶି ଆସି ସାବନ୍ତୀକୁ ପ୍ରଣାମ କଲା )

ସାବନ୍ତୀ—କିଏ ? ଏଭାଳିଟାରୁ ମୋ' ଗୋଡ଼ତଳେ ଅଧିଆ ପଡ଼ୁଛି କାହିଁକି ?

ବନ୍ଧୁସ—ସାବନ୍ତୀ ନାନୀ ! ମା ପରି ପ୍ରେମ କରୁଛ—ଭଉଣୀ ପରି ସ୍ନେହ କରୁଛ—ନିଜର ଘରପରି ମୁଁ ଏଠାରେ ରହୁଛି— ସମାଜ ସବୁ ଓଜର ଅପଉ ମୁଣ୍ଡପାତି ସହି ନେଇଛ ଅଛ ଯିବାବେଳରେ···

ସାବନ୍ତୀ—ଯିବା ବେଳ ! ହଇରେ କୋଉ ଯିବୁ କୁଆଡ଼େ ?

କସ୍ତୁରୀ—ଜାଣେନା କୁଆଡ଼େ ।

ସାବିତ୍ରୀ—ତାଙ୍କ କଥା ଗୁଡ଼ା ମନରେ ଧରୁଛୁ କି ଲୋ ? ଆଉ ମେଲଟା ଫିକଏ ଦବ ଗଲା ନାହିଁ ? ସେଇଥିରେ ସବୁ ତୋ ଖାଲି ମୁଣ୍ଡଟା ବିଗିଡ଼ି ଯାଇଛି ।

କସ୍ତୁରୀ—ଏଦିନ ଖାଲି କଥା ମୁଁ ଧରୁନି । ସତରେ ନାନୀ ମୁଁ ନିଜେ ଜାଣି ପାରୁଛି । ତାହିଁକି ତୁମ ଘୋଟ ସଂସାରରେ ବେଶୀ ଦିନ ଗଳଗ୍ରହ ହୋଇ ରହିବି ।

ସାବିତ୍ରୀ—କସ୍ତୁରି

କସ୍ତୁରୀ—ମତେ ବାଧ୍ୟ କର ନା ନାନି ତା ଛଡ଼ା ଏଠି ବେଶୀ ଦିନ ରହିଲେ ଫିରିଙ୍ଗିର ଆଖି ତୁମ ଉପରେ ପଡ଼ି ପାରେ । ମୁଁ ଏଠୁ ବାହାରି ଗଲେ କେହି ମୋ ପତ୍ତା ପାଇବେ ନାହିଁ ହିଁ ନାନି କେହି ପାଇବେ ନାହିଁ ।

ସାବିତ୍ରୀ—କଣ ବକ୍ସିଙ୍କ ପାଖକୁ ଯିବୁ ? ତେବେ ରହିଥା ମୁଁ ତାହା ପାଖକୁ ଖବର ଦଏ ସେତେ ରଜଦୋଳ କରି ସେବକଙ୍କ ପଠେଇ ଦେବ ।

କସ୍ତୁରୀ—ନା ସେବକଙ୍କ ନୁହେଁ—ବକ୍ସିଙ୍କ ପାଖକୁ ନୁହେଁ। ନା ନାନୀ ଅଉ ନୁହେଁ—ଅଉ ତାହିଁକି ଯିବ ଅଉ ଦିନେ ଯେଉଁ ଦିନ ତାଙ୍କର ଦୁର୍ବଳ ମୁହୂର୍ତ୍ତି ଗୁଡ଼ିକୁ ଡହଳ କରିବାକୁ ପଡ଼ିବ—ଯେଉଁଦିନ ତାଙ୍କ ମନରେ ଅଣିବାକୁ ହବ ଚେତନା ନା, ନା, ଅଉ ନୁହେଁ ।

ସାବିତ୍ରୀ—ହିଁ ତାହିଁକି ବା ଅଉ ଯିବୁ ? କିଏ ଜାଣେ ବକ୍ସି କଣ କଳ୍ପନା ପୁଣି ନଦେଇ କି ଅଣ୍ଟା ଉତ୍ପନ୍ନ କି ନାହିଁ ?

କସ୍ତୁରୀ—କଣ କହୁଛ ନାନୀ ? ଝଣ୍ଡା ଉଡ଼ୁଛନ୍ତି ନ ନାହିଁ । ହେଲେ, ତାଙ୍କୁ ଝଣ୍ଡା ଉଡ଼ାଇବାକୁ ପଡ଼ିବ । ହଁ, ହିଁ, ଝଣ୍ଡା ଉଡ଼ାଇବାକୁ ପଡ଼ିବ ।

ସାବିତ୍ରୀ—କସ୍ତୁରୀ !

କସ୍ତୁରୀ—ନା, ନା, ମୁଁ ଯିବି, ମୁଁ ଯିବି ।

ସାବିତ୍ରୀ—କୁଆଡ଼େ ?

କସ୍ତୁରୀ—ତାରି ପାଖକୁ ?

ସାବିତ୍ରୀ—କାହା ପାଖକୁ

କସ୍ତୁରୀ—ଯାହାକୁ ମୁଁ ଭଲ ପାଏ । ଯାହା ପାଇଁ ଜେଲ ଭିତରେ ମୋ ଆଖିରେ ଆସିଥିଲା ଲୁହ—ସେଇ ସେଇମ ନାନୀ···

ସାବିତ୍ରୀ—ଭଲ ପାଉ ?

କସ୍ତୁରୀ—ଭଲପାଏ ନାହିଁ ? କଏଦୀ ହୋଇଥିଲି ବୋଲି କଣ ପ୍ରାଣଟାକୁ ଉଜାଡ଼ି ଦେଇଥିଲି ?

ସାବିତ୍ରୀ—କସ୍ତୁରୀ !

କସ୍ତୁରୀ—ଅଜି ତେବେ କହନା ନାନୀ ମୁଁ ପାଗଳ ହୋଇଯିବି । ଭୁଲ ମତେ ଟିକଏ ଆଗରେ ଛାଡ଼ି ଦେଇଆ ।

ସାବିତ୍ରୀ—ଆଉ କେବେ ଦେଖା ହେବ କସ୍ତୁରୀ ?

କସ୍ତୁରୀ—ସେଇଦିନ ନାନୀ ଯେଉଁଦିନ ପା'ର ହାତରୁ ଛୁଟିଯିବ ବେଡ଼ୀ······

( ସେ ଝଡ଼ପରି ବାହାରିଗଲା )

ସାବିତ୍ରୀ—କସ୍ତୁରୀ କସ୍ତୁରୀ ( ତାକୁ ତାକୁ ଅନୁଗମନ )

———

## ୫ମ ଦୃଶ୍ୟ

( ମେଜର ଫେଟରଙ୍କର ବୈଠକଖାନା । ବୈଠକଖାନାଟି ପାଶ୍ଚାତ୍ୟ ଧରଣରେ ସଜା ଯାଇଛି । ସିଡ଼ୀ ତଳେ ଏକ ଟେବୁଲକୁ ଲଗେଇକରି ବସିଛନ୍ତି କୃଷ୍ଣଚନ୍ଦ୍ର, ସାମନାରେ ଚରଣ ପଟ୍ଟନାୟକ, ଟେବୁଲ ଉପରେ ଏକ ଅଚ୍ଛାଦିତ ପାତ୍ର ଥୁଆ ହୋଇଛି । )

କୃଷ୍ଣଚନ୍ଦ୍ର—ବସ...ବସେ ବସେ କଥା ବଲ ।

ଚରଣ—କୃଷ୍ଣ କୃଷ୍ଣ—ଅଜ୍ଞା, ଇହା, ଲୋକେ କହୁଛନ୍ତି ମହାଲ ଗୁଡ଼ାକ ଏବେ ଗୋଡ଼ ମାଟି ଦରରେ କଲିକତାରେ ନିଲାମ ହୋଇଯାଉଛି । କୁହନ୍ତୁ । ଲୋକଙ୍କ ମୁହଁରେ କିଏ କଣ କ୍ଲଥ (Cloth) ଦେବ ? ବଙ୍ଗାଳୀ ଜମିଦାର ହୋଇ ଯାଉଛନ୍ତି... ଯାଆନ୍ତୁ । ସେମାନେ ହେଲେ ଦେବଅଂଶୀ, ଆଉ ଧୁଣି ମହାଲ ନବ କିଏ ? ଯାହା କହନ୍ତୁ ଆପଣ, ଆମ ଲୋକଗୁଡ଼ାକ, ଇହା ଖର ବ୍ୟାଡ୍ (Bad) ମାନେ ଖର ସ୍ଲେଟ୍ ନଜସ୍ତ ଅଟେଉ ଆଟମ କିଏ ଅଞ୍ଚ ବଙ୍ଗାଳି କିଏ ? ଏକା ସ୍ୱର୍ଗତମାତାର ତ ସନ (Son) ଏଥିପାଇଁ ଏତେ କଥା ଭାବୁଁଛ ?

କୃଷ୍ଣଚନ୍ଦ୍ର—ଏ ଗଳ୍ପମାନ ଥାଉ । ଏ ସବ୍ ତୁମାର କାଜ ନଏ । ଏଖୁନ୍ ବଲତ ଦେଖି ଆମାର ସୁ ଗାହିଣରେ ତହସିଲଦାର ଗୃହସ୍ତରେ ମୁକରର ହୋଇଲ, ବଲତ ଦେଖି...ଟାଙ୍କଟା କେରକମ ଚଲେଛି ?

ଚରଣ—କୃଷ୍ଣ କୃଷ୍ଣ—ମୁଁ ଗୁଡ୍ ରୋଡ୍ (Good road) ରେ ଚାମ୍ ଚଳେଇଛି । ହଜୁର ଲୋକେ କହୁଛନ୍ତି, ଆମର ଡାଗିସ୍ କମ୍ପି ଥିଲା । ଆମେ ଖଜଣା ନଟ୍ (not) ଦବୁ । କୃଷ୍ଣ କୃଷ୍ଣ... ଚରଣ କନୁ ରାବ ବ୍ୟବସ୍ଥା କର ହୁକୁମ କରୁଛନ୍ତି ।

ଭେତରେ ବିଟ୍ (beat) କରି କରି ପିଠି ଖଣ୍ଡିଆ କରି ଦିଅ । ଅଣ୍ଟାରେ ଓ୍ୱାକ (walk) କରାଅ । କାଆଁ ଗୁଣ୍ଡାରେ ଟଚ୍ (touch) କରିଦିଅ ।

କୃଷ୍ଣଚନ୍ଦ୍ର—ତୁମ ଠିକ ଅଛ ସାର ହେଡକନେଷ୍ଟବଲ ବ୍ୟାଟା ଚରଣ-ପଣ୍ଡକନେଷ୍ଟବଲ ।

ଚରଣ—କୃଷ୍ଣ କୃଷ୍ଣ ସବୁ ହେଉଛନ୍ତି ଖାଲି ଉପର ଏତକ—ଭାରେ ଲୋକେ ଗଣ୍ଡଗୋଳ କରି ପାରନ୍ତି ।

ପ୍ରେତର—(ହେଡ଼୍ମୀ ଦେଇ ଖସି ଅସୁଥିଲେ) Be heartless my boy—be heartless ତୁମର ଦୟା ମାୟା କାହିଁ । ମୁଁ ବିଲାୟତରୁ ଆସି ନାହିଁ ଦୟା ଦେଖାଇବାକୁ । ତୁମେ କଲିକତାରୁ ଅସିନାହିଁ କରୁଣା କରିବାକୁ । ହେଡକନେଷ୍ଟବଲ ମଧ୍ୟ ନୌକିରି କରି ନାହାନ୍ତି ଉଦାରତା ଦେଖାଇବାକୁ । God has sent us as rulers—ଇଶ୍ୱର ଅମ୍ଭମାନଙ୍କୁ ପଠାଇଛନ୍ତି ଶାସନ କରିବାକୁ—ତୁମେ ଭୟ କରନା । ହାମ ହୁକୁମରେ ତୁମେ ଶାସନ କରଯା ।

ଚରଣ—( ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ )

ପ୍ରେତର— Gep up—You Tahasildar ତୁମେ ଏ କାମ୍ କରୁଛ ।

( ଚରଣ ଉଠି ଠିଆ ହେଲେ )

କୃଷ୍ଣଚନ୍ଦ୍ର— Good morning Sir

ପ୍ରେତର— Good morning my boy.।

କୃଷ୍ଣଚନ୍ଦ୍ର—( ଟେବୁଲ ଉପରେ ଥିବା ପାନ ଟେକି ଦେଇ ) ସାର୍, ଆମର ଦୋଷ ମାର୍ଜନା କରନ୍ତୁ । ଏଇ......

ଝଫ୍ଚର—Well—ସେ କଥା ଥାଉ—present .. ଓ ସ୍ୱନାର ପୋଦ୍ଦାର...( ଉପରେ ପଦ୍ମଗୁଡ଼ା ହାତ ଦେଖାଇ ) ଦେବ୍ ପେମ୍ ସାହେବଙ୍କର ପାଦତଳେ ଦେଇ ଅସ। (କୃଷ୍ଣଚନ୍ଦ୍ର ଓଡ଼ି ଦେଇ ଉଠେକୁ ଉଠିଗଲେ) Now Pattnaik ଟୁପେଟ ଜାନ ଡେଣ୍ଣୁ କ ବଡ଼ଣ୍ଡି ଉଦ୍ଧ୍ୱ—and for that ଆଜେ ତୁମକୁ ଡାକିଲି, ବର୍ତ୍ତମାନର ବେଳ ହେଉଛି Crisis ର ବେଳ—ଟ୍ରେସପାସେନ ହେଲ ହାପର ସବୁ ତୁମ୍ଭୁ ହାପର ନୀତି ଜାଣିବାକୁ ହେବ...My policy you know is not of Harkots—nor of the Govts,—My policy is mine କନ୍ କହୁଛନ୍ତି ଟହସିଲଦାର ସାହେବ ...ମୋର ନୀତି ହାର୍କୋଟର ନୀତି ନୁହେଁ କି ଅଛି ଭାଭାର ନୀତି ନୁହଁ...My policy is. my policy.

ଚରଣ—ଇହା ଠାଣ ଗାଇଟ (right) ହଜୁର...ଇହା ଲୋକେ ବାହୁଙ୍କ ମତେ ଏତେ ଲଭ୍ (love) କରନ୍ତି ? ଅପଣ ଗୃଣତେ୍ର କହିଲେ ଦେବାନ୍ ହାତେ କରିବେ......ମୁଁ ଦଦାତ କରିବ—ମୋ ଗାଉ ବ ସେଇଥ। ମୋର ଫାଇଵ ପେଇ (five male) ପରିହଛା ସାଙ୍ଗରେ ସଭିଁସ (service) କରି କରି ସେଇଥ ଖିଂଡିଛନ୍ତି ।

ଝଫ୍ଚର—Five male ? Oh. You mean five generation ! ( ହସି ) ତୁମର ପାଞ୍ଚ ପୁରୁଷ—

ଚରଣ—ହଁ ହଁ—ହଜୁର ମୋର କଣ ସବୁ ଠିକ୍ ହୋଇ ପାରୁଛି......

ଝଫ୍ଚର—ଅପଣଙ୍କୁ ଅଛ ମୁଁ ଗୋଟିଏ ଉଚିର କଥା କହୁଛ ।

ଚରଣ—ଦେଖା ହେବାକୁ ଅଛି ? ମତେ ପୁଣି କିନ୍ (in) କଥା କହୁଚେ ?

ଫ୍ଲେଚର—Then tell me believing on whom we have Come here ? Relying on whom the Company wants to extend its Territory so that the sun may not set in the British Empire— ? ଆ ତେବେ ଶୁଣନ୍ତୁ—ଯାହା ଉପରେ ଭରସାକରି East India Company ଏ ଦେଶକୁ ଆସିଛି । ଯାହା ଉପରେ depend କରି Company ରାଜ୍ୟ ବୃଦ୍ଧି କରିବାକୁ ଚାହେଁ·····ଯେଉଁଥିପାଇଁ ହେଲେ British Empire ରେ ସୂର୍ଯ୍ୟ ଅସ୍ତ ନ ହୁଏ ।

କୃଷ୍ଣଚନ୍ଦ୍ର—( ସ୍ୱଗତ ) ସାହେବର କି ହେଲା ଚରଣ ପଟ୍ଟନାୟକ !

ଚରଣ—କୃଷ୍ଣ କୃଷ୍ଣ—କିଛି ନାହିଁ । ମତେ ଅଣ୍ଡରଷ୍ଟାଣ୍ଡ (Understand) କରୁଅଛନ୍ତି—ମାନେ ବୁଝୁଅଛନ୍ତି ।

ଫ୍ଲେଚର—ହିଁ ଆପଣମାନଙ୍କ ଉପରେ, ଯେଉଁ ଆପଣମାନେ ଚାହାନ୍ତି ଦେଶରେ better Government ହେଉ ।

କୃଷ୍ଣଚନ୍ଦ୍ର—କହେ ଭାଇ ପଟ୍ଟନାୟକେ କ'ଣ ଚରଣ ପଟ୍ଟନାୟକ କହୁଛ ନାଁ ? କହ······କହ···

ଚରଣ—ସେଇଥିପାଇଁ ସାହେବ ଭୁଲିଅ କହୁଛି ମେନି (many) କଥା । କିଙ୍ଗ ( king ) ଜୟଚନ୍ଦ୍ରଙ୍କଠାରୁ ଆରମ୍ଭ କରି······

ଫ୍ଲେଚର— That they will say—ଆ ସେମାନେ କହୁଚେ । ତୁମେ ଜାଣିଛ କେଉଁ—We have our historians

to save you ତାପ ହାତରେ ଇତିହାସ ଲେଖକମାନଙ୍କର ଅଭାବ ନାହିଁ । ଭବିଷ୍ୟତରେ ଆପଣମାନଙ୍କର ନାମ ଇତିହାସରେ ଲେଖା ହେବ in Golden Letters. Yes ଲୁହା ହୋଇ ରହିଲ କାହିଁକି ?

( ସମସ୍ତେ ବସିଲେ )

ବେଵର୍ଥ୍ୟାନ, ଉଠିବେ ତୁମେ କନ୍ ଲେଖିଠିଲ ?

କୃଷ୍ଣଚନ୍ଦ୍ର—ସାର ଆସି କାଳଟେ ସ ରଲ୍ଲମର୍ଦା ବୋନ୍ ଅଫଳ ବନ୍ଧିବ କନ୍ୟ ମୁକ୍ତିର ଆଦେଶ ଇଲେନ୍ ।

ଫ୍ଲେଚର—Dont talk like a Nonsense.

ଚରଣ—ହଜ୍ଜୁର, ଗଜପତି, ଗଜଗୁରୁ ଅର ବନ୍ଦିଙ୍କର ଏଗେନେଷ୍ଟରେ ( against ) କାହିଁକି ଅଦାର ଅଦାର ( Other other ) ଶାସ୍ତି ଆଦେଶ ଦେଲେ ଦେଇ କଥାଟା—

ଫ୍ଲେଚର—Because that is my second policy ତୁମେ ଜାଣ ସ୍ୱାମେ ଚନଡ୍ କର ଘଶିଥିବା କରୁଣେଇ ଦୁର୍ଗରୁ ସେମାନେ ଖସି ଚଲ ଦେଇ ପଳାଇବାର ଚେଷ୍ଟା କରୁଥିଲ— Form them two were captured—ତା ଭିତରୁ ଦୁଇଜଣ ଧରା ଦେଲେ—ରାଜା ଅର ମନ୍ତ୍ରୀ…ଜନଟି ଧୃତ ବନ୍ଦି ଖସି ଚଲ ଗଲେ…ତାଙ୍କୁ କାଣାହିଁ ଅତେମ ଦେଇ ଗାଡ୍ ।

ଚରଣ—ବୃଷ୍ଟ, କୃଷ୍ଣ, ହଜ୍ଜୁର କିନ୍ତୁ ସାପଟାର ହେଡ୍ ( head ) ଟାଲୁ ।

ଫ୍ଲେଚର—That I understand— ସେ କଠା ମୁଁ ବୁଝୁଛି । But, we also see the situation. ଅତେବ କ୍ଷେତ୍ର ଅବସ୍ଥାକୁ ଅଣି ବନ୍ଦ କରୁ ନ ଗାଡ୍ । If we kill

him we connot control the Paikas—ତାଙ୍କୁ ଆମେ ମାରିଲେ ପାଇକମାନଙ୍କୁ ଅକ୍ତିଆରରେ ରଖି ପାରିବୁ ନାହିଁ । ସେଥିପାଇଁ ମୁଁ ତାଙ୍କ ସଙ୍ଗେ ଭଲ ବନ୍ଦୋବସ୍ତ କରୁଛି······Now I will astonish you—ବକ୍ସି ଏଠାକୁ ଅଣ୍ଣ ଆସିବ ।

କୃଷ୍ଣଚନ୍ଦ୍ର—Sir !

ଚରଣ—କୃଷ୍ଣ, କୃଷ୍ଣ କାନ ଦିଅ ଶୁଣର ( Hear ) କଥା ହଜୁର ।

ଫ୍ଲେଚର—Messenger ହାତରେ ଆମେ ଖବର କରିଥିବା—ସେ ଗଲ—Fletcher in wiser, yes Dewan ତୁମେ କିଛି କରି ପାରିଲ ନାହିଁ—ମୁଁ କରୁଛି ଦେଖ······Perhaps Rodang is his only Zamindary ? ରୋଡ଼ଙ୍ଗ ହେବେ ତାଙ୍କର ଏକମାତ୍ର ଜମିଦାରୀ ।

କୃଷ୍ଣଚନ୍ଦ୍ର—ହଁ ସାର ।

ଫ୍ଲେଚର—ଆମେ କଲେକ୍ଟର ସାହେବଙ୍କ ପାଖେ ତୁମ କଥା ଲେଖିଲି । ଚିନ୍ତିତ ହେବାର କୌଣସି କାରଣ ନାହିଁ—Let the tiger be first caged—ପ୍ରଥମେ ବାଘଟା ଜଂତାରେ ପଡ଼ୁ ।

କୃଷ୍ଣଚନ୍ଦ୍ର—କିଛି ନାହିଁ ସାର—ଆପଣଙ୍କର ଭରସା ଥାକଲେ ରୋଡ଼ଙ୍ଗଟା କ'ଣ—ଅରକ୍ଷିତ ଜନା ସହିତରେ—ଦେଖିଲେନ୍ନାଁ ସାର ଆପଣଙ୍କର ହୁକୁମରେ ଜମ୍ମି ସଜ୍ଜଗୃହରେ ଖରଚମ ଅମି ଫାସି କାଟେ···

ଫ୍ଲେଚର—ତୁମେ ଠିକ୍ କହିଛ ଦେଓ୍ୱାନ୍—ତୁମେ ଠିକ୍ କହିଛ-ତୁମେ ଏ ଦେଶର ବୀର ଲୋକ ସେ କଲବଟାରୁ ଅସି

ଓଡ଼ିଶାରେ ଦେଓ୍ୱାନୀ ଭଣ୍ଡାରେ । yes—ଆମେ ତୁମକୁ ସବୁ ପ୍ରକାର help କରିବୁ ।

( ବାହାରେ ଏକ ସଂକେତ ଧ୍ୱନି ହେଲା ) Oh Baxi has come—ବକ୍ସି ଆସିଲା—ମୁଁ ଯାଉଛି କିଛି ଅଣିବ ଆଉ ତୁମେମାନେ ଭିତରକୁ ଯାଅ......( ସମସ୍ତେ ଚାଲି-ଗଲେ । କିଛି କିଛି ସମୟ ପରେ ବକ୍ସି ଆଉ ଫ୍ରେଜର ପଶି ଆସିଲେ । ବକ୍ସିଙ୍କର ଦେହରେ ଦାରିଦ୍ର୍ୟର ପୋଷାକ—ମୁଣ୍ଡ ଖାଲି )

ଫ୍ରେଜର—ଆପଣ୍ ଭାଙ୍ଗି ପଡ଼ନ୍ତୁ ନାହିଁ ବକ୍ସି—we are hero nations—ଆମେ ହେଲୁ ବୀର ଜାତି—we know how to honour a hero—ବୀରଙ୍କୁ କିପରି ସମ୍ମାନ ଦେଖାଇ-ବାକୁ ହୁଏ ତାହାକୁ ତା' ମାଲୁମ ଅଛି । ଆପଣ୍ ଆମ ବିପକ୍ଷରେ ବିଦ୍ରୋହ କଲେ—ଶେଷରେ ବିଦ୍ରୋହ ଭାଙ୍ଗିଲା ହୋଇଗଲା ତେଣୁ ତୁମେ ଲୁଚି ପଳାଇଗଲ—We do not mind it ଆମେ ସେ କଥା ଧରୁ ନାହିଁ—you see Baxi we do not want your head we want your hand ଆମେ ତୁମର ମୁଣ୍ଡ ଲୋଡ଼ୁଁ ନାହିଁ ତୁମର ଦୋସ୍ତି ତୁମର ବନ୍ଧୁତା ଲୋଡ଼ୁଛୁ । Now you are undone ତୁମର ସବୁ ଗଲାଣି—ମନ୍ତ୍ରୀ ଅଛନ୍ତି । Baxi ଏବେ ତୁମର ରାସ୍ତା ଖୋଲିଅଛି । But. ତୁମେ ଯଦି ଆମ କଥାରେ ରାଜି ନ ହେବ ତେବେ ଉଦ୍ଧାର କିଛି ନାହିଁ । କିନ୍ତୁ On behalf of the Company କମ୍ପାନୀ ତରଫରୁ ମୁଁ କଥା ଦେଉଛି—ତୁମେ ଶାନ୍ତିରେ ରହ ।

ବକ୍ସି—ଅବସ୍ଥା ଦୃଷ୍ଟିର ମୁଁ ବନ୍ଦି ·····ମୁଁ ବି ସ୍ୱଦେଶ ଦ୍ରୋହୀ ପାଇବର ନିରର୍ଥକ ପ୍ରାଣବଳି ·····କିନ୍ତୁ—

ଫ୍ଲେଚର— What then—ତେବେ କିନ୍ତୁ କଣ

ବକ୍ସି—ଗଜପତିଙ୍କୁ ମେଦିନୀପୁରରେ କଏଦୀ କରି ରଖିଲେ ଲୋକମାନଙ୍କୁ ହୁଏତ ସଂଭାଳି ହେବ ନାହିଁ ।

ଫ୍ଲେଚର—I Will try to bring him to Puri—ମୁଁ ତାଙ୍କୁ ପିଜସ୍ଥ ଆଣିବାର ଚେଷ୍ଟା କରିବି ।

ବକ୍ସି—ସେଇଆ କରନ୍ତୁ ।

ଫ୍ଲେଚର—Then you are not our enemy. Baxi is our great friend ତାହେଲେ ବକ୍ସି ଆଉ ଆମର ଶତ୍ରୁ ନୁହେଁ—ବକ୍ସି ହେଲେ ଆମର ବନ୍ଧୁ । Hail Baxi—Hail.

ବକ୍ସି—ଦେଖନ୍ତୁ—ମତେ ସମୟ ଦିଅନ୍ତୁ ମୁଁ ବଞ୍ଚିପାର କିନ୍ତୁ ······

ଫ୍ଲେଚର—Yes yes-ଆପଣଙ୍କର ଯାହା ଇଚ୍ଛା । That is settled । ବକ୍ସି ହେଲ ଆମର ବନ୍ଧୁ ।

ବକ୍ସି—ଅନ୍ତତଃ ଫିରିଙ୍ଗି ଯଦି ଅବିଶ୍ୱାସୀ ନ ହୁଏ—ଫିରିଙ୍ଗି ଯଦି ପ୍ରବଞ୍ଚନା ନ କରେ ।

ଫ୍ଲେଚର—I promise ମୁଁ ଶପଥ କରୁଛି—ଆମେ ତାହା କରିବ ନାହିଁ—

ବକ୍ସି—ତେବେ ଅଣେ ନିର୍ଭର ଥାଉ ଫ୍ଲେଚର ସାହେବ ବକ୍ସିର ତାର ପ୍ରତିଜ୍ଞା ଭାଙ୍ଗିବ ନାହିଁ ।

ଫ୍ଲେଚର—My tribute to you Baxi—ବକ୍ସି ତୁମର ବୀରତ୍ୱ ପାଇଁ···ତୁମର ଉଦାରତା ପାଇଁ ମୁଁ ତୁମକୁ ସମ୍ମାନ ଦେଉଛି । ( ସେ ଅଣ୍ଟୁମାଡ଼ି ବସି ବକ୍ସିଙ୍କର କର ଚୁମ୍ବନ କଲେ ) ।

—ଡ୍ରପ—

# ତୃତୀୟ ଅଙ୍କ

---

## ୧ମ ଦୃଶ୍ୟ

( ବାଲ୍‌ସାଡ଼ୁ ରାଜ ପ୍ରାସାଦର ଗୋଟିଏ ସାଧାରଣ କକ୍ଷ । କାନ୍ଥରେ ଦେଢେଟା ବନ୍ଧୁକ ଝୁଲୁଛି । ଦୂରରୁ ଶୁଭୁଛି କରୁଣ ସଙ୍ଗୀତ...

ଦୁର୍ମଦ ସୈନିକ ବୀର
                    ଚଲରେ ଦୁର୍ଜୟ ପଥେ...
ହେ ଝଂଝା ତୋଫାନ ବକ୍ଷନଅ
                    ନିର୍ଭୟ ଅଟଳ ରଥେ ।
                    ଚଲରେ.........।—
ଜାଗନ୍ତୁ ଆଜି ଏ ସୁପ୍ତ ଧରଣୀ
ଜାଗିଛୁ କଳିଙ୍ଗ ସଇନ ସରଣୀ
    ଛୁଟନ୍ତ ତରୁ ଏ ଅଗ୍ରତ ଶତତ
        ଜରେ ଜରଦାଳ ମାତେ
        ଚଲରେ ଦୁର୍ଜୟ ପଥେ ॥

ରାଜା ମୁକୁନ୍ଦ-ଦେବ ସେଇ ଗୀତର ସ୍ୱରରେ ମନ୍ତ୍ର ମୁଗ୍ଧପରି ଅସି ବସିଲେ, ହଠାତ୍ ସଙ୍ଗୀତ ବନ୍ଦ ହୋଇଗଲା । ମୁକୁନ୍ଦ-ଦେବ ଚଞ୍ଚଳ ହୋଇ ଉଠିଲେ )

ମୁକୁନ୍ଦ—ଅଃ···ଗୀତଟା ବନ୍ଦ ହୋଇଗଲା—କିଏ ବନ୍ଦ କଲା । କିଏ···ତାହିଁକି ? ଗାଅ···ଗାଅ ( ସଙ୍ଗୀତ ହେଉଥିବା ଦିଗରୁ ପଶି ଆସିଲେ ରାଣୀ । ଅଳ୍ପ ବୟସ୍କ କେଶ ତଥାପି କଥାରେ ଥିଲା ଗାମ୍ଭୀର୍ଯ୍ୟ ଅଉ ମୁଖରେ ଥିଲା ଦୀପ୍ତି )—ରାଣି···

ରାଣୀ—ମହାରାଜ ।

ମୁକୁନ୍ଦ—ତୁମେ ବନ୍ଦ କରିଦେଲ ସଙ୍ଗୀତର ଏଇ ମଧୁର ଝଂକାର ।

ରାଣୀ—ସେଇ ମୋର ଅପରାଧ ମହାରାଜ ।

ମୁକୁନ୍ଦ—ତାହିଁକି ?

ରାଣୀ—ଗଜପତିଙ୍କର ଭାଗ୍ୟର ବିପର୍ଯ୍ୟସ୍ତ ମୁହୂର୍ତ୍ତ ମୁଁ ରାଜନବରରୁ ସଙ୍ଗୀତର ଅବସାନ ଲୋଡ଼େ ।

ମୁକୁନ୍ଦ—ସେ କଣ ରାଣି !

ରାଣୀ—ହଁ ମହାରାଜ···ଆନନ୍ଦର ସଙ୍ଗୀତ ନୁହେଁ···ଯଦି କେବେ ଏଠି ସଙ୍ଗୀତର ଲୀଳା ହେବ ସେ ହେବ ବିଷାଦର ସଙ୍ଗୀତ ମୃତ୍ୟୁର ସଙ୍ଗୀତ—ସର୍ବନାଶର ସଙ୍ଗୀତ ।

ମୁକୁନ୍ଦ—ରାଣି, ତୁମେ କଣ କହୁଚ ?

ରାଣୀ—କଣ ଅଉ ହୋଇପାରେ ମହାରାଜ । ଗଜପତିଙ୍କର ଅଉ ଅଛି କଣ ସଙ୍ଗୀତର ମଧୁର ମୂର୍ଚ୍ଛନାରେ ନିଜକୁ ଭସାଇ ଦେବା ପାଇଁ । ଗଜପତି ଯେ ଆଜି ନିସ୍ୱ-ସର୍ବହରା ସେକଥା ଅବ ମନେ ପକାଇବାକୁ ସମ୍ଭବ ନାହିଁ ।

ମୁକୁନ୍ଦ—ଜାଣେ ରାଣି । ତଥାପି ଜୀବନ ମୃତ୍ୟୁ ନୁହେଁ ।

ରାଣୀ—ହଁ ମୃତ୍ୟୁ ନୁହେଁ ? କିନ୍ତୁ ଜୀବନ ଯେ ମୃତ୍ୟୁପାଇଁ ଏକ ବିରାଟ ଅଭିଯାନ, ଗଜପତି କଣ ସେକଥା ଅସ୍ୱୀକାର କରୁଛନ୍ତି ?

ମୁକୁନ୍ଦ—( ଚୁପ ରହିଲେ )

ରାଣୀ—ନିରୁତ୍ତର କାହିଁକି ଗଜପତି ?

ମୁକୁନ୍ଦ—ମୋର ସମୟ ନାହିଁ-ମୋର ସମୟ ନାହିଁ ରାଣି ତୁମେ ଯାଅ ତୁମେ ଯାଅ—

ରାଣୀ—(ହସିଲେ)

ମୁକୁନ୍ଦ—ଏ କଣ ? ହସି ଉଠିଲ କାହିଁକି ?

ରାଣୀ—ସମୟ ନାହିଁ, ସେଇକଥା ଭାବୁଛି—

ମୁକୁନ୍ଦ—ରାଣି ।

ରାଣୀ—ହଁ ଗଜପତିଙ୍କର ସମୟ ନାହିଁ···ଓଡ଼ିଶାର ଗଜପତି ଲକ୍ଷେ-ଶ୍ୱରୀର ମଙ୍ଗଳମଣି ତାଙ୍କର ଆଜି ସମୟ ନାହିଁ । ସମୟ ଯେତେବେଳେ ଥିଲା ହୁଏତ ରାଜ୍ୟଶାସନର ଚିନ୍ତା କରି ଠାକୁରଙ୍କର ଦାୟିତ୍ୱ ତାଙ୍କ ଉପରେ ଥିଲା । ଆଜି କିନ୍ତୁ ସମୟ ନାହିଁ । କିନ୍ତୁ ଗଜପତି କେବେ ଠାରୁ ସମୟ ଅଭାବ ହେଲା ? ହଁ, ହଁ ସେଇ ବରୁଣେଇ ଦୁର୍ଗର ଘଟଣାପରେ ଫିରିଙ୍ଗିର କଟକ ଓ ମେଦିନୀପୁର କଏଦୀ ଖାନା, ମହାରାଜାଙ୍କ ବିଶ୍ରାମ ପାଇଁ ଖୋଲିଯିବା ପରେ ହୁଏତ ?

ମୁକୁନ୍ଦ—ଅଘାତ ଉପରେ ଅଘାତ ଦେଉଛ ରାଣି—

ରାଣୀ—ଦେବନି ଗଜପତି ମୋର ଯେମିତି ଭୁଲି ହୋଇ ଯାଉଛି, ଠିକ୍ ତ, ମେଦିନୀପୁରର କଏଦୀ ଖାନାରୁ ଗଜପତିଙ୍କୁ ଅଣି ଏଇ ବାଲିସାହି ନବରରେ ରଖିବା ପରେ ଗଜପତିଙ୍କର ସମୟ ବଡ଼ ଅଭାବ ହୋଇ ପଡ଼ିଛି ।

ମୁକୁନ୍ଦ—ରାଣି ! ରାଣି ! (ଭଙ୍ଗାଭଙ୍ଗାବେ)

ରାଣୀ—ମୁଁ ଶୁଣି ପାରୁଛି ଗଜପତି—

ମୁକୁନ୍ଦ—(ହଠାତ୍ କଇଁ କଇଁ ହୋଇ କାନ୍ଦିବାକୁ ଆରମ୍ଭ କଲେ)

ରାଣୀ—ଏ କଣ ଗଜପତି ? (ଶିଶୁର ମୁହଁଟିକୁ ମା ଯେପରି ଟେକି ଧରେ ରାଣୀ ସେମିତି ଗଜପତିଙ୍କ ମୁହଁଟିକୁ ଟେକି ଧରିଲେ)

ମୁକୁନ୍ଦ—( ନିଜକୁ ରାଣୀଙ୍କର ବନ୍ଧନରୁ ଫିଟାଇନେଇ ) ମୁଁ ସବୁ ଜାଣୁଛି ରାଣି, ମୁଁ ସବୁ ବୁଝି ପାରୁଛି । କିନ୍ତୁ କଣ କରିବି କୁହତ ? ମୁଁ ଅକ୍ଷମ ନିରୁପାୟ ମୁଁ ଅସମର୍ଥ—ମୁଁ ଦୁର୍ବଳ, ପକ୍ଷହୀନ ପକ୍ଷୀ ପରି ନିଜ ବ୍ୟଥାରେ ଗୁମୁରି ହେବା ଛଡ଼ା ମୋର ଆଉ ଅନ୍ୟ କଣ ଅଛି ରାଣି ? ସେଇ ଗୋଟାଏ ଭୁଲ ସେଇ ଗୋଟାଏ ଭୁଲ—ଫିରିଙ୍ଗି ସହିତ ପ୍ରଥମ ଥର ସମ୍ପର୍କ ସ୍ଥାପନ କରି ଯେଉଁ ଗୋଟାଏ ଭୁଲ କରି ପକାଇଲି ତାର ସଂଶୋଧନ ପାଇଁ ମୋତେ ଲକ୍ଷ ଲକ୍ଷ ଭୁଲ କରିବାକୁ ପଡ଼ୁଛି ରାଣି । ମୁଁ କିନ୍ତୁ ଦୁର୍ବଳ । ଫିରିଙ୍ଗି ଯେଉଁ ଅଦୃଶ୍ୟ ବ୍ୟୂହ ରଚନା କରିଥିଲା...ଦୃଷ୍ଟିର ଅନ୍ତରାଳରେ ଯେଉଁ ନାଗ ଫାଶ ସୃଷ୍ଟି କରିଥିଲା ସେଥିରେ ବନ୍ଦୀ ମୁଁ...କଣ କରିବି କୁହତ ରାଣି ?

ରାଣୀ—ବିପଦବେଳେ ଗଜପତିଙ୍କ କଣ୍ଠରେ ଏ ଆର୍ତ୍ତନାଦ ଶୋଭା ପାଏନା...

ମୁକୁନ୍ଦ—କଣ ତେବେ ଶୋଭା ପାଏ ରାଣି... ?

ରାଣୀ—ଫିରିଙ୍ଗି ଅପେକ୍ଷା ଦେଶର ଲକ୍ଷ ଲକ୍ଷ କୁସ୍ଥାରଛନା ଭାଇ ଯେଉଁମାନଙ୍କର ଗୋଟିଏ ମୁଖ ଆଜି ଶତମୁଖ ହୋଇ ଯାଇଛି ଆପଣଙ୍କର ନିନ୍ଦା ଗାନରେ ସେମାନଙ୍କ ଅପେକ୍ଷା ଆପଣଙ୍କୁ ମୁଁ ଭଲ କରି ଜାଣେ ଗଜପତି, ଆପଣ ପୁରୁଷ ସିଂହ ବିପଦ ବେଳେ ବିପଦକୁ ପାଦତଳେ ଦଳି ଦେଇ ଯିଏ ଛୁଟନ୍ତି

ଶିରରେ ଚୂଡ଼ାରୂପେ ସେଉଠି ସ୍ୱରୂପ, ସେ ସୌରୁଷ ଆପଣଙ୍କର ଅଛି । ଆଉଣ ଆଉଥରେ ଚେଷ୍ଟା କରି ତାର ସବଚୟୁ ଦଅନ୍ତୁ…

ମୁକୁନ୍ଦ—(ଦୀର୍ଘ ନିଶ୍ୱାସ ପକାଇ) ଚେଷ୍ଟା କରିବି—କରିବି ରାଣୀ… (ସେ ଯାଇଁ ବନ୍ଧୁକଟା ଉଠାଇ ଆଣି ଉପରକୁ ଟେକି ଧରି ପରୀକ୍ଷା କଲେ ) ରାଣୀ ( ସେ ବନ୍ଧୁକଟା ଟେବୁଲ ଉପରେ ଅଢ଼ାଇ ଦେଲେ ) ମୁଁ ଅବଶ ହୋଇ ପଡ଼ୁଛି ତୁମେ ମୋତେ ବିଶ୍ରାମ ଦିଅ ଯାଅ ତୁମେ ( ବାହାରେ ଘଣ୍ଟା ଶବ୍ଦ ଶୁଣାଗଲା ) ଦେଖ ରାଣୀ । ବାହାରେ କିଏ ଅପେକ୍ଷା କରୁଛି ପ୍ରତିହାରୀ ଘଣ୍ଟା ଧ୍ୱନିରେ ସଙ୍କେତ ଦେଉଛି, ଦେଖତ !

ରାଣୀ—(ବାହାରକୁ ଚାଲିଗଲେ ଓ କିଛି ସମୟପରେ ଫେରିଆସି) ଦେୱାନ କୃଷ୍ଣଚନ୍ଦ୍ର ।

ମୁକୁନ୍ଦ—ଓଃ ଦେୱାନ କୃଷ୍ଣଚନ୍ଦ୍ର ! ଏ ଲୋକଗୁଡ଼ାକ ମଣିଷକୁ ଟିକିଏ ନିଶ୍ଚିନ୍ତରେ ମରିବାକୁ ଦେବେନି, ପୁଣି ଡାକ କୃଷ୍ଣଚନ୍ଦ୍ର ( ସେ ବାହାରକୁ ଗଲେ ଓ ରାଣୀ ଅନ୍ୟବାଟ ଦେଇ କକ୍ଷାନ୍ତର ଗ୍ରହଣ କଲେ । କିଛି ସମୟ ପରେ କୃଷ୍ଣଚନ୍ଦ୍ର ଓ ରାଜା ପଶି ଆସିଲେ )

ମୁକୁନ୍ଦ—ପୁଣି କି ପରଓ୍ୱାନା ଦେୱାନ୍ ?

କୃଷ୍ଣଚନ୍ଦ୍ର—( କିଛି ଉତ୍ତର ନ ଦେଇ ଗୋଟିଏ ଚୌକିରେ ବସି ପଡ଼ିଲେ, ରାଜା ସେହିପରି ଛିଡ଼ା ହୋଇଥାନ୍ତି । ) ପ୍ରଥମେ ମୁଁ ଆପଣଙ୍କୁ ବସିବେ କହୁଛି ।

ମୁକୁନ୍ଦ—ତା କହିବେ—କାରଣ ଆଜି ସିଂହର ଗୁହାରେ ସିଂହ ତାର ଅଧିବାସୀ ନୁହେଁ ।

କୃଷ୍ଣଚନ୍ଦ୍ର—ଏ ପ୍ରକାର କେମନ କଥା— ?

ମୁକୁନ୍ଦ—କିଛି ନୁହେଁ—ଆପଣଙ୍କର ଔଦ୍ଧତ୍ୟ ସୀମା ଲଙ୍ଘନ କରୁଛି । ମୋର ଘରେ—ପ୍ରଥମେ ଆପଣ ଆସନ ଗ୍ରହଣ କରି ମତେ ବସିବାକୁ ନିର୍ଦ୍ଦେଶ ଦେବାର ଅର୍ଥ ଅଜ୍ଞକଣ ହୋଇ ପାରେ ?

କୃଷ୍ଣଚନ୍ଦ୍ର—ଆପଣ ଭୁଲ ଯାଉଛନ୍ ରାଜା ଆପଣ ବାଦ୍‌ସାହୀ ନବାବର ନଜର ବନ୍ଦୀ—ଆଜି ଆମ ଗଭର୍ଣ୍ଣରର ସାହେବର ଦେୱାନ......

ମୁକୁନ୍ଦ—ଭୁଲି ନାହିଁ—ଭୁଲିବାର ଚେଷ୍ଟା କରୁଛି—ଯାହାହେଉ, କୁହନ୍ତୁ—ପୁଣି କି ପର୍ୱାନା ନେଇ ଆସିଲେ ।

କୃଷ୍ଣଚନ୍ଦ୍ର—( ପକେଟରୁ ଗୋଟେ କାଗଜ ବାହାର କରି ) ବଙ୍ଗ ସରକାରର ହୁକୁମନାମା କୋର୍ଟ ଅଫ୍ ଡିରେକ୍ଟରସ୍‌ର ସମ୍ମତି ଅଛି ।

ମୁକୁନ୍ଦ—( ସେଇ କାଗଜ ନେଇ ପଢ଼ୁଥିଲେ )

କୃଷ୍ଣଚନ୍ଦ୍ର—ମହାମାନ୍ୟ ସରକାର ଆପଣଙ୍କର ସମସ୍ତ ଅପରାଧ ମାର୍ଜନା କରୁଛନ୍ତି । ଆପଣ ରାଜା ବୋଲି ପରିଚିତ ହୋଇ ପାରିବେ ବଟେ—କିନ୍ତୁ ଆପଣଙ୍କର ହସ୍ତରେ କୌଣସି କ୍ଷମତା ଥାଇବେ ନା-ଆଉ ମହାମାନ୍ୟ ସରକାର ପ୍ରୀତ ହୋଇ ଆପଣଙ୍କୁ ମାସିକ ଏକୋଇଶ୍ ଶହ ଟେଣ୍ଡର୍ ଟାକା ପଞ୍ଚଣା ସ୍ୱର ପାହୁଲ ଭତ୍ତା ଦେବେ ସମ୍ମତ ଅଛନ୍ତି ।

ମୁକୁନ୍ଦ—( ସେ କାଗଜକୁ ରଖିଦେଲେ ) ତେବେ ଲୋକେ ମାହାଲଥ ମୁକୁନ୍ଦ ଦେବ ବୋଲି ଯେଉଁ ନାମ ଧରଣ କରୁଛନ୍ତି ତାହା ମିଥ୍ୟା ନୁହେଁ ଦେବନ୍ ।

କୃଷ୍ଣଚନ୍ଦ୍ର—ମୁଁ ତେବେ ଆସୁଛି—ହଁ, ଯିବା ପୂର୍ବରୁ ଆପଣଙ୍କୁ କମ୍ପାନୀ ତରଫଥିବେ ମୋର ଆଦେଶ—ଆପଣ ଅବଶ୍ୟ

ପଦବୀର ଦାୟିତ୍ୱ ବହନ କରବେନ୍—କିନ୍ତୁ ସେନାଦେର ପରିଚାଳନା ଆପନାଙ୍କର ହାତେ ରାଖତେ ହେବ ସାହେବ ସାଙ୍ଗ ନୟେ (ଢଟି ସୁଲମାଜ ଥିଲେ)—ହଁ ଆର ଏକ କଥା, ଆପନାର ସାମନେ କୌନପି ଅସ୍ତ୍ର ଶସ୍ତ୍ର ଧର୍ତେ ପାରବେନ୍ ନା କିଂବା କାର ସଙ୍ଗେ ଆମାର ବିନା ଅନୁମତିତେ ପରାମର୍ଶ କରତେ ପାରବେନା। ଆପନି ଯାତେ ପୂର୍ଣ୍ଣ ଶାନ୍ତି ଓ ବିଶ୍ରାମେତେ ଥାକେନ୍ ସେ ଜନ୍ୟ ରାଜନବରେର ସୁବପାର୍ଶ୍ୱେ କରୁଅଲ ରଖିବାର ଜନ୍ୟ କଂପାନୀ ନିଜେର ଖର୍ଚେ ବ୍ୟବସ୍ଥା କରବେ !

ମୁକୁନ୍ଦ—ସେ କଂପାନୀର ସୌଜନ୍ୟ ଓ ଦୟା……

କୃଷ୍ଣଚନ୍ଦ୍ର—ହଁ ତବେ ହାଁ ଆର ଏକଟା କଥା, ଆପନି ଆମାର ବିନା ହୁକୁମେତ କୋର୍ଥା ଗଡ଼େ ଯାତେ ପାରବେ ନା (ବନ୍ଧୁକଟା ଦେଖି) ଆପନି ବିନା ଅନୁମତିତେ ଏ ବନ୍ଧୁକଟାଓ ରାଖିତେ ପାରବେନ୍ ନା ଆମି ଏଟା (ସେ ନେବାପାଇଁ ଉଠାଇବା ବେଳେ)

ମୁକୁନ୍ଦ—କୃଷ୍ଣଚନ୍ଦ୍ର !

କୃଷ୍ଣଚନ୍ଦ୍ର—କୋମ୍ପାନୀର ଆଦେଶ—ଆପନି ଅମାନ୍ୟ କରତେ ପାରବେନ୍ ନା ରାଜା, ଫଲ ବିଷମୟ ହବେ (ବନ୍ଧୁକ ନେଇ ଚାଲିଗଲେ)

ମୁକୁନ୍ଦ—( ଲଜ୍ଜାର ଭରେ ) ରାଣି ରାଣି ! [ ରାଣୀ ପଶି ଆସିଲେ ]

ରାଣୀ—ଗଜପତି—

ମୁକୁନ୍ଦ—ଜାଣ ରାଣି ଜାଣ ? ଓଡ଼ିଶାର ଗଜପତି, ଲୋକ ମୁଖର ଚଳନ୍ତି ବିଷ୍ଣୁ ତାର ବଂଶ ପରଂପରା ବିନାଶ ହୋଇବାରେ—ତାର ଗୌରବ ଓ ସମ୍ମାନ ବିନାଶ ପୁରେ—ଆଜି ପାଇଛି ତାର ପ୍ରାପ୍ୟ ଏକୋଇଶ ଶହ ତେତିଶ ଟଙ୍କା ପାଞ୍ଚଅଣା ବୃତ୍ତିପାଉଛି

ଠିକ୍ କହୁଥିଲ ରାଣୀ, ତୁମେ ଠିକ୍ କହୁଥିଲ—ପୁରୁଷକୁ ବଶ୍ୟ କରିବାକୁ ହେବ ତାର ପୌରୁଷ ନେଇ ରାଜାଙ୍କୁ ବଂଶ ରଖିବାକୁ ହେବ ତାର ରାଜତ୍ୱ ନେଇ—କିନ୍ତୁ କୁହତ ? ମୁକୁନ୍ଦଦେବଙ୍କ ବଂଶ ରଖିବାକୁ ହେବ କଣ ନେଇ ? ରାଣୀ, ମୁଁ ଦୁର୍ବଳ ହୋଇ ପଡ଼ୁଛି—ଅବଶ ହୋଇ ପଡ଼ୁଛି—ମୁଁ ନ୍ୟାୟ ଅନ୍ୟାୟର ବିଚାର ଭଲ ମନ୍ଦର ବିଚାର-ଶକ୍ତି ହରାଇ ବସିଛି ।

ରାଣୀ—ମହାରାଜ···

ମୁକୁନ୍ଦ—କୁହ ରାଣୀ ! କଣ କହିବ······ଆଜି ଜନ୍ମୀ ରାଜତ୍ୱ ନାହିଁ···ଆଜି ପୁରୁଷ ସିଂହ ବକ୍ସି ବି ମୋଠାରୁ ବହୁତ ଦୂରରେ ।

ରାଣୀ—ତଥାପି ଗଜପତି ବକ୍ସି ପ୍ରାଣରେ ବଂଚିଛନ୍ତି ।

ମୁକୁନ୍ଦ—ବଂଚିଛନ୍ତି ନିଶ୍ଚୟ କିନ୍ତୁ ସେ ଦିନର ବକ୍ସି ଆଜି ମରିଯାଇଛନ୍ତି । ଫିରିଙ୍ଗିର ମୁଷ୍ଟି ବାତ୍ୟାରେ ଯେ ନିଜକୁ ଭୁଲିଯାଇ ଖୋର୍ଦ୍ଧାର ଇହକାଳ ପରକାଳ ଅନ୍ୟର ହାତରେ ସମର୍ପି ଦେଇ ପାରେ—ସେ ବକ୍ସି ଆଜି ମରିଯାଇଛନ୍ତି ।

ରାଣୀ—ମୁଁ ବକ୍ସିଙ୍କ ପାଖକୁ ଗୋପନରେ ଖବର ପଠାଇଛି ।

ମୁକୁନ୍ଦ—ଗୋପନରେ ?

ରାଣୀ—ହଁ—ବକ୍ସି ଗୁପ୍ତ ବେଶରେ ବଡ଼ ଦେଉଳକୁ ଆସିବେ ଯେଉଁ ସବାରିରେ ମୁଁ ଜଅଁ ଦର୍ଶନକୁ ଯାଏ, ସେ ସବାରି ଖାଲିଥିବ । ଆଜି ରାତି ଭିତରେ ବକ୍ସି ଏଠାକୁ ଆସିବେ ।

ମୁକୁନ୍ଦ—ତୁମେ, ତୁମେ କଲ ? କାହାର ଅନୁମତିରେ ଏ ବ୍ୟବସ୍ଥା କଲ । କାହାର ?

ରାଣୀ—ସ୍ୱାମୀ···

ମୁକୁନ୍ଦ—ତୁମେ ଜାଣନା ରାଣୀ ତୁମେ ଜାଣନା । ବକ୍ସି ଆଜି ତାର ଗୌରବ ଦୀପ୍ତ ଶିରକୁ ଭୂଲୁଣ୍ଠିତ କରି ସାରିଛି । ତାର ପ୍ରତିଭା ଦୀପ୍ତ ମୁଖ ମଣ୍ଡଳରେ ବୋଳିଛି କଳଙ୍କର ରେଖା ।

ରାଣୀ—ଏବୁଝାଉଣ ମହାରାଜ, ସ୍ୱୟଙ୍କ ଭ୍ରାତୁଷ୍ପୁତ୍ରେ ପ୍ରତାରିତ ହୋଇ ବକ୍ସି ଭୁଲ କରିଛନ୍ତି । ବକ୍ସି ମଣିଷ, ମଣିଷ ଭୁଲ କରେ । ତଥାପି କୁହନ୍ତୁ ପ୍ରଭୁ, ବକ୍ସିଙ୍କର ସାହାଯ୍ୟ ନ ନେଲେ ଗଜପତିଙ୍କର ଅଭ୍ୟୁତ୍ଥାନ ପାଇଁ କଣ ଉପାୟ ବାକି ଅଛି ?

ମୁକୁନ୍ଦ—ଅଭ୍ୟୁତ୍ଥାନ, ସେ ଅଭ୍ୟୁତ୍ଥାନ କେଉଁ ନାହିଁ ଯଦି ଓଡ଼ିଶାର ଗଜପତିକୁ ଅନ୍ୟର ସାହାଯ୍ୟ ନେବାକୁ ହୁଏ…

ରାଣୀ—ପ୍ରଭୁ

ମୁକୁନ୍ଦ—ଯାଅ ରାଣି, ଦୁର୍ବଳମନକୁ ମୋର ଆଉ ଦୁର୍ବଳ କରିଦିଅ ନାହିଁ । ଉଦ୍ଦେଶ୍ୟ ଅବହେଳା ମନକୁ ଛିନ୍ନଭିନ୍ନ କରି ପକାଉଛି

( ବାହାରେ ଘଣ୍ଟା ଧ୍ୱନି ହେଲା )

ମୁକୁନ୍ଦ—କିଏ ?

ରାଣୀ—( ଚାଲିଗଲେ ଓ କିଛି ସମୟ ପରେ ପଶି ଆସିଲେ ) ବକ୍ସି

ମୁକୁନ୍ଦ—ବକ୍ସି ! ଏତ ସ୍ୱପ୍ନ ନୁହେଁ । ବକ୍ସି ! ( ବକ୍ସି ଭିତରକୁ ପଶି ଆସି ମୁଣ୍ଡ ତଳକୁ କରି ଠିଆ ହେଲେ; ଦେହରେ ଭିକାରୀର ବେଶ ) କିଏ ତୁମେ ? ରୋହଙ୍ଗର ଜମିଦାର ବକ୍ସି ? ଏଠି କାହିଁକି ? ଯାଅ ରୋହଙ୍ଗ, ସେଇଠି ଘୋଷଣା କର ତୁମ ବିଜୟର କୀର୍ତ୍ତି ସେଇଠି ପ୍ରଚାର କର ତୁମର ଖ୍ୟାତି, ଚୁପ କରି ଠିଆ ହେଲ କାହିଁକି, ରୋହଙ୍ଗର ଜମିଦାର ବକ୍ସି ନୁହଁ ତୁମେ ?

ବକ୍ସି—ଶ୍ରେଭଗଡ଼ର ଜମିଦାର ନୁହେଁ ଗଜପତି । ଗଜପତିଙ୍କର ବକ୍ସି ମୁହେଁ । ସର୍ବହରା ଜଗବନ୍ଧୁ ବିଦ୍ୟାଧର ।

ମୁକୁନ୍ଦ—ସର୍ବହରା, ସର୍ବହରା, ଖୋର୍ଦ୍ଧା ବକ୍ସି ମୁହଁରେ ଅଙ୍କ ଦୁର୍ବଳର ଅଭିନାଦ, ନେଇ ଅଙ୍କ ବକ୍ସି ଜଗବନ୍ଧୁ ବିଦ୍ୟାଧର ମୁହଁନ୍ତି ! ସର୍ବହରା ଜଗବନ୍ଧୁ ବିଦ୍ୟାଧର ! ହାଃ, ହାଃ, ହାଃ, ଫେରିଯାଅ ଫେରିଯାଅ ତୁମେ ବକ୍ସି, ଫେରିଯାଅ ଗଜନବରର ପବିତ୍ର ଚରିତ୍ରକୁ କଳଙ୍କିତ କର ନାହିଁ, ସର୍ବହରା ବକ୍ସି ତୁମେ ଫେରିଯାଅ ।

ବକ୍ସି—ଆପଣଙ୍କଠାରେ ଏ କଣ ଦେଖୁଛି ପ୍ରଭୁ ?

ମୁକୁନ୍ଦ—ସର୍ବନାଶର ଭୂତ, ଫିରିଙ୍ଗିର ଭୂତ । ( ତାପରେ ସେ ପାଗଳଙ୍କ ପରି ହସି ଉଠିଲେ )

— ❋ —

## ୨ୟ ଦୃଶ୍ୟ

( ଗାଁ ଦାଣ୍ଡ...ଧନ ଓ କୁବୁପା କଥାବାର୍ତ୍ତା ହୋଇ ହୋଇ ପ୍ରବେଶ କଲେ )

ଧନ—ହଇରେ କୁବୁପା, ସେ ପେଞ୍ଚୁଆ କୃଷ୍ଣଚନ୍ଦ୍ରଟା କେଡ଼େ ପେଞ୍ଚଟାଏ ନ ଖେଳିଲା ? ଶେଷରେ ବକ୍ସି ସାଆନ୍ତଙ୍କ ପରି ଲୋକଙ୍କୁ ଦାଣ୍ଡର ଭିକାରୀ କରିଦେଲା ।

କୁବୁପା—ହେଇଟି ଧନଅ ଭାଇ, ତୁ କହୁଛୁ ସେଇଆ, ମୁଁ ବି କହୁଛି ସେଇଆ, ପାଞ୍ଚଜଣ ବି କହୁଛନ୍ତି ସେଇଆ । ହେଲେ ଅସଲ ପେଞ୍ଚଟା କଣ ତ ଆମେ ଜାଣିଲେ ନାହିଁ ।

ଧନ—ବଙ୍ଗାଳୀ କେଡ଼େ କାମଟାଏ ନ କଲା ? ଆରେ ସୁନାଫଳିଆ ଭଲ ଜମିଦାରୁ—ସେ ପୁଣି ଦଶ ବାର ମାଣ ବି ନୁହେଁ ବାଟି

ବାଛି ହୋଇ ବୃଷଣ୍ଢ ବାଛି······ଧନ୍ୟ ଧନ୍ୟ କୃଷ୍ଣଚନ୍ଦ୍ର ଧନ୍ୟ ତୁମ ମହିମା ।

କୃଷ୍ଣପା—ଚାହିଁର ଗୋଟାଏ ଧନ୍ୟ ଧନ୍ୟ ହେଉଛୁବା ଅସଲ ଭିତର କଥାଟା ଜାଣିଛୁ ଯେବେ କହ ।

ଘନ—ଅରେ ମୁଁ କଣ ଜାଣିଛି ? ହେଇତ ଜଗୁର କବାଟେ ଅଇଲେଣି ସେ ଜାଣିଥିବେ ଅବା ।

ଜଗୁର କବାଟ—କୋଉ କଥା ଘନ—କୋଉ କଥା ?

କୃଷ୍ଣପା—ନାହିଁ କବାଟେ, ଏଇ ବଳସି ସାଆନ୍ତଙ୍କ ଜମିଦାରୀ ଯିବା କଥା ।

ଜଃ କବାଟ—ସେ କଥା ଅଉ କହନା କୃଷ୍ଣପା—ସେ ଗୋଟାଏ ଶଳୁନ ଚକାନ୍ତ ।

କୃଷ୍ଣପା—ତେମେବତ ସେଇ କଥା କହୁଲ—କଥା ଫିଟାଇ କହୁନା ।

ଜଃ କବାଟ—ନାହିଁ ହୋ, ବାଟଟା, କେଉଁଠି ଯଦି ସେ ନାମକହସମ ତରଣୀଆର ଲୋକ କି ସେ ଦେବାନର ଲୋକେ ଶୁଣିବେ···

ଘନ—ହଇହେ ଶୁଣିଲେ ଶୁଣନ୍ତୁ···କମ୍ପାଣିଙ୍କ ନେଇ ମହଁନଘରେ କଲେଣି—ଏ ଖେରଧା କୁହିଁବେ ବାସ ଖଣ୍ଡକ ରହୁଲେତ ।

ଜଃ କବାଟ—ଏଇନେ କିଏ କେତେ କଥା କହୁଛୁ·····କିଏ କହୁଛୁ ବଳସି ସାଆନ୍ତେ—ପିଲା କବଲ ନେଇ ଟଗୁଡ଼ଙ୍ଗ ଗ୍ଲଡ଼ କୁଆଡ଼େ ପଳାଇଲେଣି—କିଏ କହୁଛୁ ଫେରେ ସାହେବ କଥାରେ ସାଆନ୍ତେ ଭଲପାଇଁ ଏ ଦଶା ହେଲା । ଆଜବ କିଏ କହୁଛୁ, ଅସ ଦଳସିଙ୍କୁ ଆଗେ ଘୁଞ୍ଚା ଦେଇ, ସାଗଣ କର ପୁଣି ଜଠାଇବୁ ।

କୁନ୍ତଳା—ସାଆନ୍ତେ ବୁଝିବା ସୁଝିବା ଲୋକ—ସେ କ'ଣ ଅଫିସରଙ୍କ କଥାରେ ଭାଙ୍ଗିଲେ ବା ଭୁଲିଗଲେ ?

ଜଃ ଭବାନ୍ଟ—ବୁଝିଲ୍ କୁନ୍ତଳା……କପାଳ ଲିଖନ କେ ଖଣ୍ଡିବ ଆନ—ଭାଗ୍ୟରେଖା ଯେଉଁ ଅଙ୍କେ ଟାଣିବ ମଣିଷ ସେଇ ଅଙ୍କେ ଯିବ । ଶନି ପଶ୍ଚ ବକ୍ରୀଙ୍କର ଲଗ୍ନଠାରୁ ୧୦ମରେ ଓ ଚନ୍ଦ୍ରଠାରୁ ୭ମରେ ରହିଛନ୍ତି…… ଦେଖାଯାଉ…

ଘନ—ସେଇଠୁ, ସେଇଠୁ କଣ ହେଲା ?

କୁନ୍ତଳା—କୁହନ୍ତୁ ଭବାଟେ ……ଜମିଦାରୀଟା କପଟ ଘୋଡ଼ାଏ ହାତରୁ ଅନ୍ୟ ଜଣଙ୍କ ହାତକୁ ଗଲା—

ଜଃ ଭବାନ୍ଟ—ସାଆନ୍ତେ ଅମର ରାଜସ୍ବଟା କଲେକ୍ଟର ପାଖରେ ପଇଠ କରୁଥିଲେ । ବଙ୍ଗାଳୀ କହିଲା, ସେଠି ନ ଦେଇ ତହସିଲଦାର ପାଖେ ପଇଠ କରିବାକୁ—ଏଣେ ତହସିଲ-ଦାର ଗୌରବନ୍ଧୁ ଦେଲେ କୃଷ୍ଣଚନ୍ଦ୍ରଙ୍କ ନିଜଭାଇ । ସେ କ'ଣ କଲେନା ରାଜସ୍ବଟା ସାଆନ୍ତଙ୍କ ଜମାରେ ନ ଦେଇ ସେହାଙ୍କ ଓଗେର କରି ପଇଠ କଲେ । ଫଳରେ ସେହାଙ୍କ ସଙ୍ଗରେ ସେହାଙ୍କ ସାମିଲ୍ ହୋଇଗଲା ।

ଘନ—ଓହୋ । କେଡ଼େ ଖେଳଟାଏ ନ ଖେଳିଲା—ସେଇଠୁ ସେଇଠୁ ?

ଜଃ ଭବାନ୍ଟ—କୃଷ୍ଣଚନ୍ଦ୍ର ଏଣେ କଣ କଲେ ନା ନିଜ ବନ୍ଧୁ ବାନ୍ଧବ ଲକ୍ଷ୍ମୀନାରାୟଣ ନାଁରେ ସେହାଙ୍କୁ ବନ୍ଦୋବସ୍ତ କରି ଦେଲେ, ପୁଣି କେଉଁଟା ଧନ ଯାଉଛି କି ନାହିଁ ନିଜେ ଖରିଦ କରି ନେଇ ହେଲେ ସେଠାକାର ଜମିଦାର ।

ଘନ—ସାଉଦେଲେ, ବୁଝିଲ ହଜୁର ଭବାଟେ, ଅମ ମୁଲକଟାକୁ ସାବଡେଲେ ।

ଲୁବ୍ଧପା—ଆଚ୍ଛା କବାଟେ-ସାଆନ୍ତେ ମକଦ୍ଦମା କରିଥିଲେ କଣ କିଛି ହୋଇ ନ ଥାନ୍ତା ?

ଜଃ କବାଟ—ଶୁଣ ହେ ସ୍ୱା କଥା ଶୁଣ—ଗ୍ରେବାଭାବ ଯେଉଁଠି ତାକୁ, ସେଠି ପୁଣି ମକଦ୍ଦମା ? ପଞ୍ଚାଏତ ତେଣୁ ଷିଷା ଷିଷି ହୋଇ ଅଛନ୍ତି, ଯାହା ଯେଉଁଠି ହେବ ମାର ପିଟ ଖାଇବେ ।

ଲୁବ୍ଧପା—ତେବେ ଏକ' ସାଆନ୍ତେ ଉପର ହାକିମ ଠେଇଁ ଓକିଲ ଅସଉ କରିଥିଲେ ଗୋଟାଏ କିଛି କିନାରା ହୋଇ ନ ଥାନ୍ତା ?

ଜଃ କବାଟ—ଅଉ କିନାରା ? ସାଆନ୍ତେ ଦୁଲର ସାହେବ ପାଖେ କଣ ଅପିଲ କର ନ ଥିଲେ କି ? ଦୁଲର ସାହେବ ମଜଦେଲ କଚେରୀରେ ଗ୍ରେଡ଼ଙ୍କ ଦାବୀଟା ପ୍ରଥମେ ପ୍ରମାଣ କରିବାକୁ ହେବ ଭାସବେ ।

ସଦନ—ସାଆନ୍ତେ କରିଥିଲେ କଣ କିଛି ହୋଇ ନ ଥାନ୍ତା ?

ଜଃ କବାଟ—କାହିଁକି ପିଚ୍ଛାଟାରେ କଚେରୀକୁ ଯିବେ ? ଅଲନ୍ ଭାନ୍ତନ୍ ଠକର ହାତରେ । ସେ କଣ ସହଜେ ଛାଡ଼ି ଦେବେ-କେତେ ଟଙ୍କା ବାହାର କରିବେ । ଖାଲି ହରକତ ହବା କଥା ବୁଝୁଛ ଅଉ କଣ ?

ଲୁବ୍ଧପା—ହିଁ ଅମ ନିଜ କଥାରୁ ଅମେ କଣ ବୁଝୁନୁ······ହଉ ହଉ ଚାଲ ଚାଲ···

ଜଃ କବାଟ—ନାଇଁ ଭାଇ ମୁଁ ଟିକେ ସ୍ୱାଡ଼େ ଯିବି—ଟିକେ କାମ ଅଛି ସର୍ବରାକାର ପାଖରେ ।

ଲୁବ୍ଧପା—ହଉ ଯା—( ଜଃ କବାଟ ପ୍ରସ୍ଥାନ )

ଘନ—ଲୁବ୍ଧପା ଏଥର ଚାଲ—ଶୁଣିଲତ ଅଉ କଣ ?

( ଦୁହେଁ ବାହାରି ଗଲେ । )

## ୩ୟ ଦୃଶ୍ୟ

( ଘୋଟାଳ ଖୋର୍ଦ୍ଧା ଜଙ୍ଗଲର ଭିତରେ ଏକ ପାହାଡ଼ର ପାଦଦେଶ । ରାତ୍ର ଅନେକ ହୋଇଗଲାଣି—ଦୂରରୁ ବନ୍ୟଜନ୍ତୁମାନଙ୍କର ବିକଟ ଧ୍ୱନି ସମୟେ ସମୟେ ଶୁଣା ଯାଉଛି । ବକ୍ସି ସ୍ଥାଣୁପର ଗୋଟିଏ ଗଛ ମୂଳେ ଦଣ୍ଡାୟମାନ । ଏଥର ତାଙ୍କୁ ଦେଖିଲେ ମନରେ ଉତ୍ତେଜନା ପରିବର୍ତ୍ତେ ଦୁଃଖ ଆସେ । ଛିନ୍ନ ବେଶ—ଅଙ୍ଗ ମଳିନ ବସ୍ତ୍ର—ସେ ଅନ୍ଧକାର ଭିତରେ ଏକ ଅସ୍ପଷ୍ଟ ଶବ୍ଦ ଶୁଣା ଯାଉଛି ସେ ଶବ୍ଦ, ବକ୍ସିଙ୍କର ଅନ୍ତରର ବାଣୀ—ବିବେକର କଶାଘାତ )

ଶବ୍ଦ—ଟୋପିଙ୍ଗ ହ୍ୱାଇ—ଫିରିଙ୍ଗିର ମାୟା ଜାଲରେ ଗୋଡ଼ ପୂରାଇ, ବକ୍ସିର ଏଇ ଦଶା ହେଲା—ଛି···ଛି···

ବକ୍ସି—( ଚମକିପଡ଼ି ) କିଏ କହୁଛି—କିଏ ? କିଏ ? ଏ ଘଞ୍ଚ ଜଙ୍ଗଲରେ ମଧ୍ୟ ବକ୍ସିକୁ ଶାନ୍ତିରେ ରହାଇ ଦଉନାହିଁ କିଏ ?

ଶବ୍ଦ—କିଏ···କିଏ ଆଉ ହୋଇ ପାରେ ବକ୍ସି ?

ବକ୍ସି—ମୁଁ ଜାଣି ପାରୁନାହିଁ—ମୁଁ ବିଶ୍ୱାସ କରି ପାରୁନାହିଁ ।

ଶବ୍ଦ—ଜାଣିବା ଦରକାର ନାହିଁ । ବିଶ୍ୱାସ କରିବା ଆବଶ୍ୟକତା ବି ନାହିଁ ଖୋର୍ଦ୍ଧା ମୂଲକର ବକ୍ସି-ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ଏ ସବୁ ଜାଣିବା ପୂର୍ବରୁ ମରିଯିବା ଉଚିତ ଥିଲା··· ।

ବକ୍ସି—ହଁ ଥିଲା । ଥିଲା ( ସେ କ୍ଲାନ୍ତ ହୋଇ ବସି ପଡ଼ିଲେ । ଗୋଟାଏ ବିଜୁଳି ମାରିଲା-ବିଜୁଳି ଝଲକରେ ଦେଖାଗଲା ଦୂରର ଏକ ପାହାଡ଼ର ଟାଙ୍ଗର ଉପରେ ଜୟକୃଷ୍ଣଙ୍କର

ଦେବତା ଯେମିତି ପାଣିରେ ଲୁଚିବା ହୋଇଛନ୍ତି । ମୁହଁରେ ତାଙ୍କର ହସ । ବର୍ଷି ସେଇ ଆଡ଼କୁ ଛୁଟିଗଲେ )

ବର୍ଷି—କିଏ ରାଜଗୁରୁ ଆପଣେ ?

ଜୟକୃଷ୍ଣର ମୁଣ୍ଡ—ମୋର ଶେଷକଥା, ବର୍ଷି, ତୁମକୁ ମୁଁ ଭୁଲ ବୁଝିଥିଲି—କିନ୍ତୁ ତୁମର ଦେହର ଶେଷ ନ ହେଉ, ଖୋର୍ଦ୍ଧାର ଜୟଦେବ ଗଜପତିଙ୍କର ଜୟ ହେଉ ।

( ଆଉ ଥୋଡ଼ାଏ ଲହରୀ ଉଠିଲା ପାଣିରେ—ସେଇ ଗୁମ୍ଫା ଭିତରେ ଜୟକୃଷ୍ଣଙ୍କର ମୁଣ୍ଡ ଲୁଚିଗଲା ··· )

ବର୍ଷି—ରାଜଗୁରୁ ଆପଣେ—ଆପଣ ଠିକ୍ କହିଲେ—କିନ୍ତୁ ମୁଁ କି ଯାଇ ପାରିଲି ନାହିଁ । ମୁଁ ଅଗତ୍ୟା ବନ୍ଦୀ ଥିଲି । ଆଜି ଶେଷରେ ଯେଉଁ ଯାଇଛି, ଯେଉଁ ଖୋର୍ଦ୍ଧା ଅଧିବାସୀଙ୍କର ଜୀବନକୁ ଅଧିକ ମୂଲ୍ୟବାନ ମନେକରି ପରକୁ ଦେଇ ଆସିଥିଲି ଶେଷରେ ସେଇମାନଙ୍କ ସାମନ୍ତେ ଖାଲି ଯୋଗ ଦେଲି । ଯେଉଁମାନଙ୍କର ସର୍ବନାଶ କଲି ମୂଳରୁ ମୁଁ ହୁଏତ ଚେଷ୍ଟା କରିଥିଲେ—

( ପୁଣି ଏକ ଲହରୀରେ ଗୋଟିଏ ବୁଦା ମୂଳରେ ଦେଖାଗଲା ଫ୍ଲେଚରଙ୍କ ମୁଣ୍ଡ )

ଫ୍ଲେଚର—You could not have done anything. We were too powerful. ତୁମେ କିଛି କରି ପାରି ନ ଥାନ୍ତ—ଆମର ଶକ୍ତି ତୁମଠାରୁ ବେଶୀ ଥିଲା—ବୁଝି ନ ଥାଅ କି ଆମେ କେବଳ ନଈ ପାରି ସମୁଦ୍ର ପାରି ହୋଇ ଏଠିକି ଆସିଲୁ ? ଆଜି ତୁମ ଦେଶକୁ ତୁମ ଲୋକ ଠାରୁ ଶାସନ କଲୁ, ତୁମେ କିଛି କରି ପାରିଥାନ୍ତ ।

ବକ୍ସି—ଫ୍ରେଞ୍ଚର, ଫ୍ରେଞ୍ଚର, ବିଶ୍ୱାସଘାତକ ଫ୍ରେଞ୍ଚର, ତୁମେ ତାଙ୍କ ସର୍ବନାଶର ଅଗ୍ନି ଶିଖା ଖୋର୍ଦ୍ଧାର ଗାଁ ଗଣ୍ଡାରେ ବୁଣି ବୁଲିଲ ? ତୁମେ ତାଙ୍କ ଧ୍ୱଂସର ଜୀବାଣୁ ଛାଡ଼ି ଦେବାର ଚେଷ୍ଟା କରି ସୁନାର ସଉଜକରେ ।

( ପୁଣି ବଜ୍ରଲ ମାରିଲା ଫ୍ରେଞ୍ଚର ଅଦୃଶ୍ୟ ହୋଇ ଗଲେ, ମେଘର ଘଡ଼ ଘଡ଼ ଶବ୍ଦ···ସେଇ ଆଲୁଅରେ ଓ ଦେଖାଗଲେ ଚରଣ ଆଉ କୃଷ୍ଣଚନ୍ଦ୍ର )

କଏ ତୁମେ ? ଚରଣ ପଟ୍ଟନାୟକ, କୃଷ୍ଣଚନ୍ଦ୍ର ତୁମେ ନିମକହରାମ ତୁମେ ଶିଖମନାଇର ଦଳ, ଜମ୍ବୁଚନ୍ଦ୍ରର ଗୋଷ୍ଠି ( ଚରଣ ଖାଲି ହସିଲେ )

କୃଷ୍ଣଚନ୍ଦ୍ର—ତୁମି ଆମାରେ ଯାହା ବଲିବାର ବଲ, ତୋମାର କଥାରେ ଆମାର କ ଯାଏ ଆସେ ? ଆଚ୍ଛା, ବଲଇ ଦେଖି ଏଖନ୍ ଓସ୍ତଡ଼ାର ଜମିଦାର କେ ? ତୁମି ନା ଆମି ?

( ସେମାନେ ଅଦୃଶ୍ୟ ହୋଇଗଲେ )

ବକ୍ସି—ସବୁଠି ସବୁରି ଭଣ୍ଡ ହୋଇ ଗଲେ ମୋର ଛୁଆ ପିଲା, ଘର ଦ୍ୱାର ଛାଡ଼ି ଅନ୍ଧ ମୁଁ ( ବକ୍ସି ଆର୍ତ୍ତନାଦ କରି ବସି ପଡ଼ିଲେ ମୁହଁରେ କାରୁଣ୍ୟ ଆଉ ବ୍ୟଥା··· )

ଧ୍ୱନି—ବକ୍ସି···ଉଠ···ଉଠ···

ବକ୍ସି—କଏ···କଏ ?

ଧ୍ୱନି—ଉଠ···ହୋଇ ଶ୍ରଣ···

( ଶୁଣାଗଲା ସଙ୍ଗୀତର ଝଙ୍କାର ସେଇ ଗୀତରେ ଥିଲା— ପ୍ରାଣ ଆଉ ଜୀବନ ଯାଇ ଯାଉ ସବୁଥିଲା ବନ୍ଧୁସ୍ୱ । )

ଦୁର୍ମଦ ସୈନିକ ବୀର
ଚଳରେ ଦୁର୍ଜୟ ପଥେ ।
ଅମା'ନିଶା କାଟି ଅନ୍ଧାର ଅସ୍ତ
ଝଲସାଅ ତପନ ଉଗନ୍ତେ ।
ଚଳରେ.........।।

ଏଇ ଧରଣି ବୋଲେ ଜନନୀ ତୁମର
ଏଇ ଜଙ୍ଗଲ ତୁମ ମାଆ,
ଶୃଙ୍ଖଳ ଭାର କର ଟଳମଳ
ତୁମେ ତ କାହାର ନାହା ।
ଟମକ ନିଶାଣ ବାଜି ଉଠେ ଶୁଣ
ବିଜୟ ମନ୍ତ୍ରର ସାଥେ ।
ଚଳରେ.........।

ବକ୍ସି—କିଏ ? କିଏ ତୁ ବାଳକା ? ଶ୍ରବଣ ଭଦ୍ରାମେଘୀ ଅନ୍ଧାର, ବଜ୍ରଦର ପେଟ ଚିରି ଦେଉଛିଲେ ବା ପାଣି ଝର ଝରଚ୍, ଜଙ୍ଗଲ ଘଡଘଡ଼ି ନିର ବଣର ବାଘ ଭାଲୁ ବି ଝଂକ ଯାଉଛନ୍ତି ତୁ ଏକା କିଏ ?

ଜହୁର—ଭାଣ୍ଡି ମେଘ ସାନ୍ତେ, ଭାଣ୍ଡି ଅନ୍ଧାର, ଦେଖୁନା ଯାହାନ୍ତର ଜୁଆଁ ଠାର ଜଇଳଣି ତା ପରେ ସଖାଲର ନାଲି ଜଗ ଆସିବ । ଏ ବଣ ଭୂଇଁ ବି ଭଲ ହୋଇଯିବ ସାଆନ୍ତେ ।

ବକ୍ସି—କିଏ ତୁ ବାଳକା—ଏତେ ମଂମତା ଦେଇ କାହିଁକି ମତେ ସାନ୍ତେ ବୋଲୁ ?

ଜହୁର—ଶିକ୍ଷିପାରୁନାଁ ସାନ୍ତେ ?

ବକ୍ସି—ନାଁ ତ ?

ଜଗୁସି—ମନେ ଅଛି ସାନ୍ତ୍ରେ, ବରୁଣେଇ ଦୁର୍ଗରେ ସମସ୍ତଙ୍କର ଦୃଷ୍ଟି ଛିଣ୍ଡେଇ ଦେଇ, ଏକ ଲଢ଼ଆ ହୋଇ ତାହାର ହାତ ପ ପୂଲ୍ ଉପରେ ବୋଲି ଦେଇଥିଲି ଜହର—

ବକ୍ସି—ଜଗୁର !

ଜଗୁସି—ହଁ ସାନ୍ତ୍ରେ ମରନାହିଁ······

ବକ୍ସି—ତୁ ତେବେ ଏଠି କେମନ୍ତ ?

ଜଗୁସି—ତୁମକୁ ଖୋଜି ଖୋଜି । ତୁମେ ଏଠି ଜାଣିବ ? ଖୋର୍ଦ୍ଧା ମୂଲକ ଉପରେ ଥରେ ଅଖି ପକାଇ ନା ?

ବକ୍ସି—ଖୋର୍ଦ୍ଧା ମୂଲକ ।

ଜଗୁସି—ହଁ ସାନ୍ତ୍ରେ ଖୋର୍ଦ୍ଧା ଭୂଇଁର ସୁଖିଲପଡ ଅଡୁର ସୁଖି ସୁଖି ରହୁଛି ଖାଲି ଟିକଏ ନାଆଁ ସେଠି ଲୋଡ଼ା··· ।

ବକ୍ସି—ଏକଣ କହୁଛୁ ଜଗୁର ।

ଜଗୁସି—ମିଛ ନୁହେଁ ଅଖିରେ ଦେଖ···ଛା'ଏରେ ଫଲତେ ଯିବ ।

ବକ୍ସି—ଜଗୁର ।

ଜଗୁସି—ମୋର ବେଳ ନାହିଁ ଅସିବର ଅସ···ନଇଲେ ମୁଁ ଗ୍ଲଲି······ ।

ବକ୍ସି—ଜଗୁର ।

ଜଗୁସି—ସିନ୍ଦୁର ଫାଟିଲିଣି ସାଆନ୍ତ୍ରେ—ଦେଖୁନା ତୁମର ପ୍ରିୟ ଦେଶମାର ଘାତ ଉପରେ ଠିଆ ହୋଇ ଫିରଙ୍ଗି କ ଅତ୍ୟାଚ୍ଚର କରୁଛନ୍ତି ।

( ବକ୍ସି ସ୍ତବ୍ଧିଭୂତ ଅଣ୍ଡରେ ଅନନ୍ୟଦୃଷ୍ଟିର ଜ୍ଞପା )

## ୪ର୍ଥ ଦୃଶ୍ୟ

( ସମୁଦ୍ର କୂଳବର୍ତ୍ତୀ ଏକ ପ୍ରାନ୍ତର ଦୂରରୁ ଲୁଣ ମଗ୍‌ଲମାନଙ୍କର ଗୀତ ଶୁଣା ଯାଉଥାଏ······)

ସାତ ସମୁଦ୍ରର ଦରିଅ ପାଣିର ବେପାର
ତ'ପାଇଁ କର ଏ ଦୂର ।
ଆମ ବେପାର ବଣିକ କଥା ବଲୁଛ କୂଳ
ହୋ ଦରିଅ········· ॥

ମାଟିରେ ଆମ ଜନମ ମାଟି ବେଉସା
ସମୁଦ୍ରର ଲହଡ଼ି ଆମ ଭରସା ।
(ଆଜ) ଗଣ୍ଡିଲ୍ ପରର ବାଣ୍ଡ
ଯାଅ ତୁମେ ସେପାର ॥
ହୋ ଦରିଅ·········

ନାହିଁ କହୋ ତୁମ ଦେଶେ ଦୟା ଦାନ ଧରମ
ଲୁଣ ମୁଠାକ ହରୁଛ ଲାଗୁନାହିଁ ସରମ
ନୀଳ ଆକାଶ ତଳେ ନୀଳ ସବବତ ବୋଟେ
ଚାଲଅ ଶୁଣ ଆମ ଗୁହାରି ॥
ଚାଲଅ·········

( ପ୍ରବେଶ କଲେ ଫ୍ରେଚର···ସେଇ ଦଳକୁ ଲକ୍ଷ୍ୟ କରୁଥାନ୍ତି ଇତି ମଧ୍ୟରେ କେତେକ ଲୁଣ ଚୋରେଇ ଧରି ସେଇ ବାଟେ ଗ୍ଳାଲି ଯାଉଥାନ୍ତି··· )

ଫ୍ରେଚର—Ha Sepoy.

ସିପାହୀ—( ପଶିଆସି ) ହଜୁର······

ଫ୍ଲେଚର—କନ୍ ହେଲା ?

ସିପାହୀ—ନାହିଁ ହଜୁର, ମୋ କଥା ମାନିଲେ ନାହିଁ—ଦେଖନ୍ତୁ ନାହାନ୍ତି ଟୋକେଇ ଟୋକେଇ ଧରି ଲୁଣ ଏମନ୍ ବୋହି ନେଉଛନ୍ତି ।

ଫ୍ଲେଚର—ତୁମ କଥା ମାନିଲେ ନାହିଁ ସରକାରୀ କାମରେ ବାଧା ଦେଲେ ? ହାମେ କନ୍‌ଟ୍ରୁ କଂପାନୀକୁ promise କରି ଓଡ଼ିଶାର ଲୁଣମରା ହାମେ ବନ୍ଦ୍ କରବୁ ।

ସିପାହୀ—ହଜୁର—

ଫ୍ଲେଚର—କନ୍ କହୁଛ···ତୁମ କଥା ମାନିଲା ନାହିଁ···ଅଚ୍ଛା ହାମେ ନିଜେ ଯାଇ—

ଚରଣ—( ପଶିଆସି ) ହୁଜୁର, ହୁଜୁର, ନୌ No. ହଜୁର ନୌ··· ଆପଣ ସେଲ୍‌ଫରେ (Self)ରେ ଯିବା ଦରକାର ନାହିଁ ମୁଁ ତାର ଆରେନ୍‌ଜମେଣ୍ଟ (arrangement) କରି ଦେଉଛି । ଅବେ ସିପାହୀ ଷ୍ଟାଣ୍ଡ (stand) କରି ରହନ୍ତୁ କଣ ପୁଲ (pull) କରି ନେଇଆ ଭଡ଼ ଆଣ······

( ଏଇ ସମୟରେ ଏକ ବୁଢ଼ୀ ପଶିଆସିଲା )

ବୁଢ଼ୀ—ବାବୁ, ବାବୁ

ଫ୍ଲେଚର—What is that—ସେ କିଏ···ଏଠି କନ୍ ମାଗିଲା ?

ବୁଢ଼ୀ—ଶୁଣିଲ, ବୁଅଢ଼େ ସାଇବ ଅସିଛୁ ଲୁଣ କମିବୁ···ଗୁହାରି କରିବାକୁ ଅସିଲି

ଚରଣ—ହୁସ୍ ହୁସ୍—ଏଠିକି କାହିଁକି—ବଂଗଳାକୁ······

ବୁଢ଼ୀ—ନାହିଁ ବାବୁ ମୋ ଗୁହାରି ଟିକେ ଶୁଣ···

ଫ୍ଲେଚର—What does she say—କଣ ସେ କହୁଛି ?

ଚରଣ—କୃଷ୍ଣ କୃଷ୍ଣ—ସେ କମ୍‌ପ୍ଲେନ କରୁଛୁ (complain)

ଫ୍ଲେଚର—Complain, What Complain ? Complain Complain ଶୁଣିଆଡ଼େ Complain—ଏ ଲୋକଗୁଡ଼ାଙ୍କୁ ମାଲୁମ ହେଲା ନାହିଁ Better Government କଣ୍ ।

ବୁଢ଼ା—ସରକାରବାବୁ ଥିଲେ ସିପାଇଗୁଡ଼ାକ ମଝେ ମାଡ଼ ମାରିଲେ । ମଝେ କହୁଲେ ଲଙ୍କଣା ଦିଅ । ମୁଁ କହୁଛି ଦେଲି—ଫିରଙ୍ଗି ହେଇ କହୁଲେ ଟଙ୍କା ଦିଅ । ମୁଁ ଟଙ୍କା କାହୁଁ ଆଣିବି ବାବୁ ? ଏ କଉଡ଼ି ତ ତାହୁଁ କେତେକାଳରୁ ଆମେ ଦେଉଥିଲୁ । ଫିରଙ୍ଗି ଆସିଲା । ମାନ ସହୁତ ଦାନା ଖନା ସବୁ ଗଲା—ମୁଁ ଗୁହାରି କରିବାକୁ ଆଇଲି ବାବୁ ।

ଫ୍ଲେଚର—କଉଡ଼ି ନେଇ କଣ୍ ଆମ ମେମ୍ ସାହେବ ପାଇଁ neckless କରିବ—no—no କଉଡ଼ି । ତୁମକୁ ଟଙ୍କାରେ tax ଦେବାକୁ ପଡ଼ିବ । well Pattnaik ତୁମେ ଜେଣି ଭାଷାରେ ବୁଢ଼ୀକୁ ବୁଝାଇ ଦିଅ—we want coins.

ଚରଣ--ହେ ଓଲ୍‌ଡ୍ ଓମାନ (old woman) ସାହେବ କହୁଛି କଉଡ଼ି ନେଇ କଣ ତା ମେମ୍ ବେକରେ ହାର କରିବ ? ତା ନଟ୍ ଡୁ (not do) ସେକଥା ହୋଇ ପାରିବ ନାହିଁ । ଟଙ୍କା ଆଣ ଟଙ୍କା ।

( ଏହି ସମୟରେ ଟୋକେଇ ଧରିଥିବା ଗୋଟିଏ ସ୍ତ୍ରୀଲୋକକୁ ସିପାହୀ ଟାଣି ଆଣିଲେ—ସେ ଅଟି ଚିତ୍କାର କରୁଥାଏ । )

ବୁଢ଼ା—ଏ କଣରେ ସାହେବ ? ଆମ ଭୂଅସୁଣୀ ଝିଅ ବୋହୂର କ ମନ ମଡ଼ତ ନେଲ ?

ଚରଣ—କୃଷ୍ଣ କୃଷ୍ଣ—ଯ୍ୟା ସାହେବର ରୁଲ (rule) ଅମାନ୍ୟ କଲେ କଣ ଅଛୁ ହେବ ?

ଫ୍ଲେଚର—You ସ୍ତ୍ରୀଲୋକ ଲୁଣ କାଢ଼ୁଛ ପାଉଁଛ ?

ଝିଅ—ମଁ—ଏହି ମାଟିର ଲୁଣ ତ ଅନେକ ଲୋକ ବହୁତଦିନୁ ଖାଉ ଆସିଥିଲେ । ଆଜ ମାଟିର ଲୁଣ ଆମେ ମାରିବୁ ନାହିଁ ତ ଆଉ କିଏ ମାରିବ ।

ଫ୍ଲେଚର—ଏ ଲୋକେ ବହୁତ ବଦମାସ ଅଛି—ତୁମକୁ କଣ ଜଣା ନାହିଁ Companyର permission ନାହିଁ ଲୁଣ collect କରିବାକୁ ତୁମକୁ କଣ ମାଲୁମ ନାହିଁ Salt business companyର monopoly ଅଛି ? ତୁମେ ଅବଶ୍ୟ ଜାଣିବ ଲୁଣ ମାରିଲେ ତୁମକୁ ହାମେ ଶାସ୍ତି ଦେବୁ । ହାମର ଅଂରେଜ ଲୋକମାନେ ଯେମିତ ତୁମର weaver. I mean ତନ୍ତୀମାନଙ୍କର ଅଙ୍ଗୁଠି କାଟି ଦେଲା—ହାମେ ସେମନ୍ତି ତୁମର ହାତ କାଟି ଦେବୁ । ସିପାହୀ ଏ ଟୋକୀଗୁଡ଼ାକୁ ସାବଦ ହତରକୁ ନେଇଯା···

ବୁଢ଼ା—ଏ ଝିଅ ଲୁଆଣୁଣୀ ଗୁଡ଼ାକୁ ଜହଲ ଦେବ । ହଇରେ ସାହାବ ଭୁଲିତ ସାହାସ । ତୋ କାଗଜର କଣ ହାତ କଟିବଣି ବକ୍ସି କଣ ମଲଣି ।

ଫ୍ଲେଚର—What ? I see Baxi is in the root of all. ବକ୍ସିର କଠାରେ ତୁମେ ଇଂରେଜ ଅଲେଖ ଅମାନ୍ୟ କଲ all right ହାମେ ତ ଲେଖି ନେବା begger ବକ୍ସି କପର ତୁମ ଦେଶର Robinhood ସାଜିଛି ( ହସିଉଠିଲେ) You Pattnaik kick these women to Jail. ତୁମେ ଏମାନଙ୍କ ଜେଲ ଭିତରକୁ ନିଅ— ।

ବୁଢ଼ା—ଜହଲର ଧମକ ଦେଖାଉଛ ସାହେବ । ଜହଲ ଭିତରେ ଏ ଝିଅ ଟୋକୀ ଦେହେଟାକୁ ପୁରାଇଲେ କଣ ଖୋର୍ଦ୍ଧା ମୂଲକଟାକୁ ଜହଲରେ ପୁରାଇବୁ ।

ଚରଣ—ହେ ବୁଢ଼ୀ ତୋ ମୁଣ୍ଡ ବିଗିଡ଼ି ଯାଇଛି । ହାକିମଙ୍କ ଆଗରେ ଠିଆ ହୋଇ କଣ କହୁଛୁ ।

ବୁଢ୍ଢା—ଅରେ ଚରଣିଆ ତୋ ହାକମ ଉଚେ ବଡ଼ ।

ଚରଣ—( ସିପାହୀଠାରୁ ସ୍ଵରୁଚ ଆଣି ମାରିକି ) ବଦମାସ ବୁଢ଼ୀ । ଆମ ମୁହଁଉପରେ ପୁଣି କବାବ୍ । ସିପାହୀ ! ବାନ୍ଧ—ଜେଲକୁ ଟେକ୍ (take) କର ।

ଫ୍ଲେଚର—No. no leave the old women. ସେ old ହୋଇଛି ସେ କନ୍ କହୁଛି ସେ ଜାଣେନାଁ ।

( ବୁଢ୍ଢାକୁ ଘଣ୍ଟ ଦେଲେ )

ବୁଢ୍ଢା—( ପ୍ରସ୍ଥାନ ସମୟରେ ) ଅରେ ଚରଣିଆ ଭଗବାନ ତୋର ମଙ୍ଗଳ କରନ୍ତୁ··· ··

ଫ୍ଲେଚର—Sepoy

ସିପାହୀ—ହଜୁର···

ଫ୍ଲେଚର—What ହଜୁର···ଯାଓ duty କରୋ···ଯାଅ ଯେତେ ଛୋକଡ଼ ଅଛି ସମସ୍ତଙ୍କୁ hunter ଲଗାଅ··· ।

ସିପାହୀ—ଏ ହାତ ଗୋଡ଼ ଚଳିବା ଯାଏ ଏ ପାପ କରିପାରିବ ନାହିଁ ହଜୁର···ଧରମ ସହିବ ନାହିଁ ମତେ ।

ଫ୍ଲେଚର—Devid.

ଡେଭିଡ୍—( Attention କରି ) Yes Sir—I can do it ହାମ କରଦେଗା ।

ଫ୍ଲେଚର—You take these women ତୁମେ ଲେଯାଓ··· ଗୋଲ୍ଲାଙ୍କର ଜନ୍‌କା ଜାନ୍ ଖତମ୍ କରଦୋ ।

ଡେଭିଡ୍—Yes Sir. ( ଡେଭିଡ୍ ହିଁଅ ଓ ଅନ୍ୟ ସିପାହୀକୁ ଧକ୍କା ଦେଇ ନେଇଗଲେ··· )

ଷ୍ଟୁଅର—ଟୁମେ ଡେଭିଲ ଟହସିଲଦାର ଏ ସିପାହୀ କେମଟି ନମକହରାମ ହେଲ, ହାମର ଅଡେଶ ଅମାନ୍ୟ କଲା।

ଚରଣ—ହଁ ହଜୁର ନିହାତ—ନମକହରାମ ଲୋକଟା ( ଭଟଙ୍କୁ ନାଣ୍ଟ କଣ୍ଟର ଶଳ୍ପାର, ଷ୍ଟୁଅରର ହସି ଉଠିଲେ । )

---

## ୫ମ ଦୃଶ୍ୟ

( ରାଜଗୁରୁ ଜୟୀକୃଷ୍ଣ ଫାଶି ଯାଇଥିବା ବଟବୃକ୍ଷ ମୂଳେ ସମବେତ ଜନତା ଓ ମଞ୍ଚରେ ବକ୍ସି )

ଜନତା—ବକ୍ସି ସାଆନ୍ତଙ୍କର ଜୟ ହେଉ । ଖୋର୍ଦ୍ଧା ମେଳିର ଜୟ ହେଉ ।

ବକ୍ସି—ଭାଇମାନେ ! ତୁମରିମାନଙ୍କ ଉଦ୍ୟମ ଲାଗି ଗଢ଼ିଥିବା ବକ୍ସିର କଳ୍ପନାରେ ପୂର୍ଣ୍ଣ ଆସିଛୁ ହଜାର ଅନେକ । ସେହି କଳ୍ପନାକୁ ରୂପାୟିତ କରିବାକୁ ତୁମେମାନେ ଆଜି ସମସ୍ତ କ୍ଲେଶ ଯନ୍ତ୍ରଣା ଭୁଲିପାଇଁ ଓଡ଼ିଶାର ଏକ ପୂଣ୍ୟ ପିଠରେ ସମବେତ ହୋଇଛ । ଏଇଠି ଦେବତୁଲ୍ୟ ମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ପିଶାଚ ରାଜ୍ୟ ଲୋଲୁପ ଫିରିଙ୍ଗି ନିର୍ମମ ଭାବରେ ହତ୍ୟା କରିଥିଲେ । ଏଇଠି ସେଇ ଓଡ଼ିଆ ବୀରର ଶେଷ ନିଶ୍ୱାସ ଉଡ଼ି ଯାଇଥିଲା···ତୁମରିମାନଙ୍କ ସ୍ୱାଧୀନତା ପାଇଁ । ସାକ୍ଷୀ ଥାଇ ଏହି ବଟବୃକ୍ଷ, ମୌନ ଶାଖା ପ୍ରଶାଖା ଦ୍ୱାର ଆଜି ଅଲକ୍ଷରେ ଖୋର୍ଦ୍ଧାବାସୀଙ୍କୁ ଇଂଗିତ ଦେଉଅଛି । ଫିରିଙ୍ଗି ଅତ୍ୟାଚାରର ପ୍ରତିଶୋଧ ନିଅ···ପ୍ରତିଶୋଧ ନିଅ ।

ସମସ୍ତେ—ଆମେ ପ୍ରତିଶୋଧ ନେବୁ ସାନ୍ତେ—ଆମେ ପ୍ରତିଶୋଧ ନେବୁ ।

ବକ୍ସି—ପ୍ରତିଶୋଧ ଖାଲି ମୁହଁର କଥା ନୁହେଁ । ଫିରିଙ୍ଗିକୁ ଏ ଦେଶ ମାଟିରୁ ନିଶ୍ଚିହ୍ନ କରିବା ସହଜ କଥା ନୁହେଁ । ସେ ଯେ ନିର୍ମୂଳ ଲତା । ଏଠାରୁ ମୂଳଟା ଗ୍ଲୁଲିଗଲେ କଣ ହେବ । ସାରା ଓଡ଼ିଶାରେ ସେ ପରା ଅଳ୍ପ ଶାଖା ମେଲି ବସିଛି । ତେଣୁ ଅଳ୍ପ ସାରା ଓଡ଼ିଶା ଭୂଇଁରେ ଫିରିଙ୍ଗି ଖଳେସର କ୍ଷେପ ଯନ୍ତ୍ରାଳୁତ ପାଇଁ ଲୋଡ଼ା ହେଉଛି ସମସ୍ତଙ୍କ ସହଯୋଗ ଯଦି ତା ନହୁଏ ପ୍ରଥମ ମେଳି ଯେପରି ବ୍ୟର୍ଥତାରେ ପରିଣତ ହୋଇଥିଲା, ଏ ମେଳିର ଅବସ୍ଥା ମଧ୍ୟ ସେହିପରି ହେବ ।

ଜ: ଭବାଠ—ଓଡ଼ିଶା ସାରା ଜିଆଁରି ଝୁଲି ଦେଖା ଗଲାଣି ସାଥୀନେ । କନକାର ବାମଦେବ ପଟ୍ଟଯୋଶୀ ଅଲ୍ଲ କୁଜଙ୍ଗର ନାରାୟଣ ପରମଗୁରୁଙ୍କ ନେତୃତ୍ୱରେ ନିଆଁ ଜଳି ଉଠିଲାଣି । ଅମ ଖୋରଧା ଭୂଇଁର କଛୁ ପଛେଇ ଯାଇ ନାହିଁ । ଗାଁରୁ ଗାଁ ପଧାନମାନେ ଦଳେଇମାନେ ପାଇକମାନଙ୍କୁ ଯୁଣ୍ଡ କଲେଣି ।

ଘନ—ରାତ ଅଧରେ ଅଖଡ଼ା ମାନଙ୍କରେ ବାଜା ବାଜୁଛି ଯୁଦ୍ଧ କଲେଣି । ପାଇକର ଗୀତ ଗାଉଛି ଅଲ୍ଲ ପଢ଼ୁଛି । ସେଥିପାଇଁ ପରା ବାହାରେ ହଜାର ହଜାର ପାଇକ ଆପଣଙ୍କ କଥାକୁ ଅପେକ୍ଷା କରୁଛନ୍ତି··· ··

ଜ: ଭବାଠ—ଆପଣ ଅଗ୍ରୁଅ ହୋଇ ବାହାରକୁ ଦେଖିବେ କଣ ହେଉଛି ।

ଘନ—ବକ୍ସି ସାନ୍ତେ ! ଅପଣଙ୍କ ଅଣ୍ଟାରେ ଆମେ ଆମର ହଜାର ହଜାର ପାହାରା କଣୁଥି ଅଲ୍ଲ ତେଜିଅ ପାଇବଳର ମୃଣ୍ଡ

ବ ଅଣି ଏଠାରେ ଗହେଇ ଦେବୁ । ଖାଲି ସେଇ ଗୋଟିଏ କଥା ପାଇଁ ଆମର ଓଜର ଆପତ୍ତି । ସେଇ ଗୋଟିଏ କଥା···

କୃଷ୍ଣପା—ହଁ ବକ୍ସି ସାଅନ୍ତେ ରଜାକୁ କେବେ ଅମେ ଆମର ମେଳରେ ପୂରାଇବୁ ନାହିଁ ।

କୃଃ କବାଟ—ରଜା ହେଲା କେଙ୍ଗା । ଯେଉଁଠି ଗୋଳ ପାଣି ଦେଖିବ ସେଠିକି ଯିବ ।

ଘନ—ରଜା ଜସରେ ଗୋଟିଏ ହେଲେ ପାଇକର ବିଶ୍ୱାସ ନାହିଁ । ବାହାରେ ଯେଉଁ ଶହ ଶହ ପାଇକ ଅପେକ୍ଷା କରିଛନ୍ତି ଆମର କଥା ବାର୍ତ୍ତାର ଫଳା ଫଳ ଜାଣିବାକୁ ତା ଭିତରୁ କେହି ଗୋଟାଏ ବି ରଜାର ପକ୍ଷ ହେବେ ନାହିଁ ସାନ୍ତେ ।

ବକ୍ସି—ମୁଁ ସବୁ ଜାଣେ ସାହାଯ୍ୟ ଓ ସହଯୋଗ ଦବାକୁ ଯାଇଁ ଯେଉଁ ବକ୍ସି ଦିନେ ଗଜପତିଙ୍କ ଜଅସରୁ ତଡ଼ା ଖାଇଥିଲା ସେହି ବକ୍ସି ଅଛି ତାର ସମସ୍ତ ସତକଥା ଭୁଲି ଯାଇଁ କହୁଛି ଏ ବିପ୍ଳବ ପାଇଁ ଗଜପତିଙ୍କର ନେତୃତ୍ୱ ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ । କୁହ ତ ଯେତେବେଳେ ଅପେ ଅପେ ଗଜପତି ନିଜର ସହଯୋଗ ଦାନ କରିବା ଇଚ୍ଛାର ଘୋଷଣ କରି ବାର୍ତ୍ତା ପଠାଇ ଅଛନ୍ତି ତାଙ୍କୁ କିପରି ଅସ୍ୱୀକାର କରାଯାଇ ପାରେ ?

ସମସ୍ତେ—ଅମେ ରଜା ପାଇଁ ଲଢ଼ିବୁ ନାହିଁ ।

ବକ୍ସି—କାହା ପାଇଁ ତେବେ ଲଢ଼ିବ ?

ସମସ୍ତେ—ଆପଣଙ୍କ ପାଇଁ,

ବକ୍ସି—ମୋ ପାଇଁ······ମୁଁ ହେବି ରଜା ( ହସି ଉଠିଲେ ସେ ) ଏ ଦୁର୍ଦ୍ଦିନରେ ବି ତୁମ୍ଭେମାନେ ମୋତେ ହସାଇଲ । ନାଁ- ଅଜି ରଜା ପାଇଁକି ମୋ ପାଇଁ ଲଢ଼ିବାର ପ୍ରଶ୍ନ ଉଠୁ ନାହିଁ ।

ଆଜି ପ୍ରଶ୍ନ ଉଠୁଛି, ତୁମ୍ଭେମାନେ ଲଢ଼ିବ ତୁମରମାନଙ୍କ ପାଇଁ । ତୁମ୍ଭମାନଙ୍କର ମାନ ମହତ୍ତ୍ୱ ଯେପରି ଫିରିଙ୍ଗିର ଖେଳ ବିଳାସ ପାଇଁ ବନ୍ଦୀ ନ ହୁଏ । ତୁମ ଅଙ୍ଗଣାରେ ଫିରିଙ୍ଗି ଯେପରି ତାର ରାଜ୍ୟ ନ ବସାଏ ତାର ପାଇଁ ତୁମ୍ଭମାନଙ୍କୁ ଲଢ଼ିବାକୁ ପଡ଼ିବ । ତୁମ୍ଭେମାନେ ଯଦି ଏ ଲଢେଇରେ ଜୟଲାଭ କର ତାହା ହେଲେ ତା ପରେ ଯାଇଁ ସ୍ଥିର ହେବ କିଏ ହେବ ଏ ଖୋର୍ଦ୍ଧା ମୂଳକର ରାଜା......ସାଇବର ପ୍ରତିନିଧି ନା ବଂଶାନୁକ୍ରମିକ ରାଜା ମୁକୁନ୍ଦଦେବ...... ।

( ସେ କିଛି ସମୟ ଚୁପ ରହିଲେ, ସେମାନଙ୍କ ମଧ୍ୟରେ ଶୁଣାଗଲା କ୍ଷୀଣ ଗୁଞ୍ଜନ—ତାପରେ ସାମାନ୍ୟ ଶବ୍ଦ ମଧ୍ୟ, ପୁଣି ସେ ଜାଗ୍ରତ ହୋଇ କହିବାକୁ ଲାଗିଲେ )

ମୋର ଆଜ ବେଶୀ କିଛି କହିବାର ନାହିଁ । ତୁମ୍ଭେମାନେ ସ୍ଥିର କର, ମୋ ନେତୃତ୍ୱରେ ତୁମ୍ଭେମାନେ ପୁଣି ଜାଗିଉଠିବ କି ନାହିଁ । ଆଜ ଯଦି ତାହା ସ୍ୱୀକାର କରନାଅ, ଜୟ ପରାଜୟ ନ ହେବା ପର୍ଯ୍ୟନ୍ତ ମୋର ଆଦେଶ ହେବ ଚରମ ଆଦେଶ—ଏଇ ମୋର ଶେଷ କଥା—( ତାପରେ ସେ ଗୋଟିଏ ଦୌଡ଼ ଆଣି ଗଣ୍ଠି ପକାଇ ) ନାଅ......ଯାଅ...... ଦିଅ ତୁମର ପାଇକଙ୍କୁ...ସେଇମାନେହିଁ ମୋର ପ୍ରଶ୍ନର ଉତ୍ତର ଦିଅନ୍ତୁ ।

( ସମସ୍ତେ ସ୍ତବ୍ଧଯାଇ ଥିଲେ )

ବକ୍ସି—କରୁଣାକର ( ଏଥର କହୁ ଅଟକି ଗଲେ ) ଚାହିଁକି... ଦେଖିଲ ତୁମେ ତ ଚୁପ ରହିଲ...

କରୁଣାକର—ମୁଁ କିଛି ଜାଣେ ନାହିଁରେ ବକ୍ସି ! ମୁଁ କିଛି ଜାଣେ ନାହିଁ । ତୋ ବାପ ଅଜା ଚଉଦ ପୁରୁଷ ମୋ ବାପ ଅଜା

ରଜତପୁଚ୍ଛ ଉପରେ ହୁକୁମତ କରନ୍ତୁ । ଆଜ ମୋ ବାପ
ଅଜା ସେଇମାନଙ୍କ ଉତ୍ସବରେ ଫଉଜ ବୁଲେଇ ଲଢ଼ିବାକୁ
ପାଇକସ୍ତ ମାଣ ତେଉଁ ଘଡ଼ିକରେ—ଏ ରଜତ ପୁଚ୍ଛର
ଖଣ୍ଡାଟା ଥୋଇ ଦେଲି ତୋର ଆଗରେ—ହାଣି ଦେବୁ
ଯଦି ଦେ—ଦେକଟା ଦୁଇଗଡ଼ କରି ଛୁଣ୍ଡାଇ ଦେ—ସେଇ
ପଡେ ଘୁଞ୍ଚାଇବ—ଆଜ ତା ଯଦି ନ କରୁଛୁ ଖଣ୍ଡାଟା
ବଢ଼ାଇ ଦେ ମୋ ହାତକୁ—ତୋ ପାଇଁ ମୁଁ ଦଇବ ମୃତ୍ୟୁ
ଗଢ଼ାଇ ଦେଇବରେ—ତେଲ୍ଲ ପଥର ସବୁ ଗଡେଇ ଦେବ ।

କକ୍ସି—କରୁଣାକର—

କରୁଣାକର—ମୁଁ ସର୍ଦ୍ଦାର ପିଲ୍ଲା—ହୁକୁମ ଗୁହେଁ ମୁଁ ଗୁହେନାରେ
ତୋର କଥଁ ଳ ତାଳ । କହ ତାହାକୁ ହାଣିବ—

କକ୍ସି—ବର୍ତ୍ତିମାନ କୁହେଁ-ପାଇକମାନେ ଆଗେ ମୀମାଂସା କରୁ
ସାରନ୍ତୁ, ଶେଷଥର ପାଇଁ ସେମାନେ ଏ ଜିଅଁରେ ହାଣ
ଦେବେ କି ନାହିଁ—

କରୁଣାକର—ବେଶ୍ (ଖଣ୍ଡାଟା ଉଠାଇନେଇ ନେଲେ )
( କିଛି ସମୟପରେ ଦାଉଡ଼ ନେଇ ଜ: ଭବାନୀ ପ୍ରବେଶ )

ଜ: ଭବାନୀ—ପାଇକମାନେ ଦାଉଡ଼ରେ ଗଣ୍ଠି ଦେଇଛନ୍ତି

କକ୍ସି—ଦେଇଛନ୍ତି ?

ସମସ୍ତେ—( ପଶିଆସି ) ଦେଇଛନ୍ତି ,ସନ୍ତେ, ଦେଇଛନ୍ତି,

କରୁଣାକର—ତୋ କଥା କଏ ଶୁଣିବରେ କକ୍ସି ?

ଘନ—ଆଜ ହେଇ କରନାହିଁ ସାନ୍ତେ, ଅଙ୍କଟାଏ ମିତ୍ର । ଦୁମ୍ବଦକ
ବଂଧ ଟିକ୍ ଅଛନ୍ତି ସେଇଠୁ ପ୍ରଥମେ ଆରମ୍ଭ ହେଉ… ।

କକ୍ସି—ବର୍ତ୍ତିମାନ ନୁହେଁ । ତୁମ୍ଭେମାନେ ପ୍ରସ୍ତୁତ ହୋଇଥାଅ,
ଅଂଚଳ ଅଂଚଳ ବୁଲି ମୁଁ ଦେଖିବ-ବିଦ୍ରୋହର ଅଗ୍ନି
ପ୍ରତ୍ୟେକ ଘରର ଘରେ ଜଳିଉଠିଛି କି ନାହିଁ-ତାପର ଯାଇଁ—

ସମସ୍ତେ—ବକ୍‌ସିସାଆନ୍ତଙ୍କର ଜୟ ହେଉ । ଖୋରଧା ମେଳର ଜୟହେଉ ।

( ବୁଢ଼ୀର ପ୍ରବେଶ )

ବୁଢ଼ୀ—କାହାର ଜୟ ଜୟ କରୁଛ ? ବକ୍‌ସିର ? ଫିରଙ୍ଗି ଭୟରେ ପାହାଡ଼ ଗୁମ୍ଫାରେ ବଣ ଜଙ୍ଗଲରେ ଯିଏ ଲୁଚି ବୁଲୁଛନ୍ତି-ତାଙ୍କ ?

ଜନ—ମାଉସୀ ବକ୍‌ସି ସାଆନ୍ତେ ପୁଣି ତୋ ଆଗରେ ଠିଆ ହୋଇଛନ୍ତି ।

ବୁଢ଼ୀ—ଆରେ ଦେଖିଛୁରେ ଦେଖିଛୁ-ସେଇଠୁ ହେଲାଗଲା କଣ ? ଆଗରେ ଠିଆ ହୋଇଣ ବୋଲିତ କହୁଛୁ-ସାଇକି ହିଅ ମୁଁ-ଯାହା କହୁଛି ସାଫ ସାଫ କହିବ ।

ଲୁହୁସା—କଣ ହୋଇଛୁ ତୋର ମାଉସୀ ?

ବୁଢ଼ୀ—କଣ ହୋଇଛୁ ? ବକ୍‌ସି ! ଧିକ ତୋ ଜୀବନକୁ—ଧିକ ତୋ ବୀରପଣିଆକୁ—ତୁ ବଞ୍ଚି ଥାଉ ଥାଉ ଖୋର୍ଦ୍ଧା ମୂଲକର ମା, ଭଉଣୀଙ୍କର ଦଶା ଏଇଆ ହେବ ? ହଇରେ ବକ୍‌ସି ? ଆମ ଜଗତରେ ଯେଉଁ ଜୁଲୁମ ହେଉଛି ସେ କଣ ମା, ଭଉଣୀଙ୍କର ନୁହେଁ ?

ବକ୍‌ସି—କଣ କହୁଚୁ ମାଉସୀ :—କିଏ ମୋର ମାଆ, ଭଉଣୀ ? ତୁ କଣ ମୋର ମା ନୋହୁଁ ? ହେଲେ ମା, ଏ ମଲା ପୁଅଟାକୁ ତୁ କଣ କହିବାକୁ ଚାହୁଁ, ମୁଁ ବୁଝି ପାରୁନାହିଁ ।

ବୁଢ଼ୀ—କଣ ବୁଝିବୁ ? କଣ ଜାଣିବୁ ? ଏଇ ଦେଖ

( ପିଠି ଦେଖାଇଲା )

ବକ୍‌ସି— ଏଁ, କିଏ ଏ ଦଶା କଲା ମା ? ଏ ଯେ ଚାବୁକର ଦାଗ ।

ବୁଢା—ହଁ ହଁ, ବନ୍ଧୁକର ଦାଗ, ତରଣୀଅ ମାରନ୍ତି, ତୋପ ଫିଟେଇ ମାରନ୍ତି, ଯାଇଥିଲି କଲିକର ସାହେବ ପାଖକୁ ଗୁହାରି କରିବାକୁ—ସେଇଠି—

ଚକ୍ରି—ଥାଉ ମା ଥାଉ, ଶୁଣିବା ଦରକାର ନାହିଁ ।

ବୁଢା—ଚକ୍ରି ! ଖୋରଧା ମୂଲକଟାକୁ ଯଦି ମାରବୁ ତୁ ମାରିଦେ ଜାଲି ପୋଡି ପାଉଁଶ କରିଦେ ସେଇ ଆମକୁ ସୁହେଇବ ହେଲେ ଫିରିଙ୍ଗିର ଜୁଲମ ଅମେ ଆଉ ସହି ପାରିବୁ ନାହିଁ । ତୋ ଗୋଡ଼ ଧରୁଛି—ତୋ ଗୋଡ଼ ଧରୁଛି—

ଚକ୍ରି—ଏ କଣ କରୁଚୁ ? ଉଠ ମା ଉଠ—ତୋର ଦରିଦ୍ର ନିଃସ୍ୱ ପୁଅକୁ ଆଉ ଅଭିଶପ୍ତ କରନା, ଯା' ମା ଯା'—କଥାରେ ନୁହେଁ—କାମରେ ଚକ୍ରି ଏ ସବୁର ଉତ୍ତରଦେବ ।

ବୁଢା—ସତ କହୁଚୁ ଚକ୍ରି ? ସତକହୁଚୁ ?

ଚକ୍ରି—ବିଶ୍ୱାସ ହେଉନାହିଁ—ଖୋରଧାର ଏ ଜନ୍ମମାଟି ଛୁଇଁ—ତୋର ପାଦ ଛୁଇଁ ଶପଥ କରୁଛି—ମୋର ଶେଷ ନିଶ୍ୱାସ ଟିକକ ଥିବା ପର୍ଯ୍ୟନ୍ତ ମୁଁ ଫିରିଙ୍ଗି ବକ୍ଷେପର ଅଗ୍ନିଶିଖା ରୂପି ବୁଲିବ । ମୁଁ ଯାଉଛି ପ୍ରତିଶୋଧ ନେବ ଆଶୀର୍ବାଦ କର ମା—ଆଶୀର୍ବାଦ କର ।

( ଅଶ୍ରୁମାଉ ବୁଢାର ଗୋଡ଼ ତଳେ ବସିଲେ ଚକ୍ରି )

---

## ୬ଷ୍ଠ ଦୃଶ୍ୟ

( ସଦନର ଅଗଣା—ସଦନ ଭୂମି ହୋଇ ମୁଣ୍ଡ ତଳକୁ କରି ବସିଛି-ଅଳ୍ପ ଦୂରରେ ପାଇକଙ୍କର ଯୁଦ୍ଧ ବାଜା ଶୁଭୁଛି )

ସଦନ—ସାବ—ସାବ—

ସାବିତ୍ରୀ—( ଭିତରୁ ) କଣ ?

ମଦନ—ପାଣି ଢାଳେ ଆଣିଲ୍-

ସାବିତ୍ରୀ—ନଉଚି, ( ଢାଳସହ ପ୍ରବେଶ ) ନେଇଛି ନିଅ,

ମଦନ—( ପାଣି ପିଇସାରି ), ଏମିତି ଧନମୁଣି ମଣିଷ କପାଳରେ ଥିଲା-ଶେଷରେ ଶୋଷରେ ପାଣିଟୋପାଏ ହେଲା ଜୀବନ ବଞ୍ଚେଇବାର ଶେଷ ଭରସା ।

( ବାହାରୁ ଡଃ ଭବାନ୍ତର ଡାକ ଶୁଭିଲା )

ଡଃ ଭବାନ୍ତ—ମଦନ ! ମଦନ ! ଘରେ ନାହଁ କିରେ ?

ସାବିତ୍ରୀ—ମ, ଖୁଣ୍ଟୁଟା ଭଳି ବସିଛ କଣ, ବାହାରେ ପରା କିଏ ଡାକୁଛି—

ମଦନ—କହିଦେ ମୁଁ ଘରେ ନାହିଁ ।

ଡଃ ଭବାନ୍ତ—ମଦନ ! ମଦନ ।

ସାବିତ୍ରୀ—ଟୋକାଟା ସୁଦ୍ଧା ଏଇଠି ବସିଛ-କହୁଚ କଣନା ଘରେ ନାହଁ ବାହାରିକି ହେଲା କଣ ?

ମଦନ—କେତେକ ମଣିଷର ହାତରୁ ନା—ସାରଳପାଟନ ପୁଣି ସବୁ ହେଲେଣି ସାହାଙ୍କ ଗୃହରେ ବକ୍ସିଙ୍କ ପାଖରେ ଲୁଣ୍ଠ ହେବେ ।

ସାବିତ୍ରୀ—କଣ କହୁଚ ତୁମେ ? ବକ୍ସିଙ୍କ ପାଖରେ ଲୁଣ୍ଠ ହେବେ ! ତେବେ କଣ ଧୁଣି ଲଗେଇ ହେବ ? ଫିରଙ୍ଗ ମୁଣ୍ଡ ପୁଣି ହଣା ହେବ ? ପା ବନ୍ଧୁଣେଇ, ପାରକ ମୁଠଙ୍କୁ ସାହା ହ ମା, ତୁମେବସିଛ ବାହାରିବା—ଯାଉନ— ।

ମଦନ—ଏ ମେଳରେ ମୁଁ ବାଦ୍ । ଅକାରଣଟାରେ ମରିବାକୁ ମିଳ ବାହାରିବା ।

ସାବିତ୍ରୀ—ପାଇକ ତୁଅ ହୋଇ ମରିବାକୁ ପୁଣି ତମର ଡର ! ତାହାହେଲେ ନିଅ ମୋର ଏହି ଗନ୍ଧଣାତକ ଅଳ ବସ୍ତ୍ରାଟା ପିଂନ୍ଧି ଘର କଣରେ ବସ—ତୁମକୁ ଲାଜ ମାଡ଼ୁନାହିଁ—ବାଘ ତୁଅ ହୋଇ ତମେ ଏକଥା କହୁଚ ।

ସଦନ—ସେ ହାଡ଼ଭଙ୍ଗା କଥା ଆଜ କହନା ସାବି ତେବର ସହିଲଣି—ଯା ଏଠୁ-ମୋ ମୁଣ୍ଡଟିକ ନାହିଁ—ଏଇନେ କଣ ବୋଲି କଣ କହିଦେବ ।

ସାବିତ୍ରୀ—ସତେଟ ମୁଣ୍ଡ ଟିକ୍ ଥିଲେ କଣ ଘର କଣରେ ଲୁଚି ଥାଅନ୍ତ ?

ସଦନ—ସାବ ତୁନିହ-ଯା-ଏଠୁ—

ସାବିତ୍ରୀ—ମୁଁ ଯିବନାହିଁ, ତୁମେ ଯିବକି ନାହିଁ ଆଗେ କୁହ—ଗୃଙ୍ଗ ବଇଁଶୀ ବାଜିଲେ ଯେଉଁ ଖାଇବ, ଖାଇବାକୁ ମାଡ଼ ଲାଗିବନି ତେଉଁ ନପଡ଼େ । ସେପୁଣି ମରଦ !

ସଦନ—ସାବି, ବଡ଼ି ବଡ଼ି ତୁ ତେର କଥା କହିଲୁଣି—ମଣିଷର ସହିବାର ଗୋଟାଏ ସୀମା ଅଛି—

ସାବିତ୍ରୀ—ଦେଖର ଭାବରେ ଯେଉଁ ପାଇକ ନାଆଁ ତୁଳା ଧରି ନାଚି ନ ଯାଏ—ଯେଉଁ ମୁଣ୍ଡଟା ଘର କଣରେ ଲୁଚିରହେ—ସେ ଜୀଇବା ଯାହା ମରିବା ସେଇଆ—ତୁମେ ଯାଅ ନ ହେଲେ ତୁମ ଗୋଡ଼ତଳେ ମୁଣ୍ଡ ପିଟି ମରିବି ।

( ଗୋଡ଼ ତଳେ ମୁଣ୍ଡ ବାଡ଼େଇବା )

ସଦନ—ସାବି, ସାବ—

ସାବିତ୍ରୀ—ସେ କଅଁଳିଆ ଭାବ ପାଇକ ହିଅକୁ ଶୁହାଏନା, କସ୍ତୁରୀ କହୁଛି ବେଢ଼ ଛୁଡ଼ିଯିବ—ଦେଶ ସ୍ୱାଧୀନ ହେବ-

ମୁଁ ସେହି କଥାଟି ଜାଣେ—ମୁଁ ଆଉ କିଛି ଜାଣେନା—
କୁହ ତୁମେ ଯିବ କିନା ?

ସଦନ—ଥରେ ତ କହିଲି, ଯିବି ନାହିଁ—

ସାବିତ୍ରୀ—ଅଚ୍ଛା ( ଘର ଭିତରକୁ ଯାଇଁ ଗୋଟାଏ ଧନୁଶର ଆଣି ) କଣ ଯିବ ନା ନାହିଁ ? ନିଜ ହାତରେ ନିଜେ ଗଣ୍ଡ ହେବା ପଛରେ ମୋର ସ୍ପୃହା ନାହିଁ—ହେଲେ ଏମିତିକା ଡରୁଆ ମରଦକୁ ।

ସଦନ—ସାବି ! ସାବି ! ତୁ କଣ କରୁଛୁ—( ସାବିତ୍ରୀ ତୀରଟା ମାରିଲା ବେଳେ ହଠାତ୍ କମ୍ପୁଡ଼ି ହୋଇ ପଡ଼ିଲା ଓ ଅଚେତ ହୋଇଗଲା )।

ସଦନ—( ସାବିକୁ ଧରିବା ପାଇଁ ) ଆରେ ଅଚେତ ହୋଇଗଲା—ସାବି, ସାବି—କଥା କହ ସାବି— ମୁଁ ଲଢ଼େଇକି ଯିବି—ତୁ କଥା କହ ସାବି, ମୋର ମନକଣ ନାହିଁ ସାବି—ହେଲେ ସେପରି ଅବସ୍ଥା ହୋଇଛି ବୋଲି ମୁଁ ପଛଉ ଥିଲିନା—ସାବି—ସାବି ( ପାଣି ଆଣି ତା ମୁଣ୍ଡରେ ଦେଲା ଓ କିଛି ସମୟ ପରେ ଚେତନା ଫେରି ଆସିଲା )।

ସାବିତ୍ରୀ—ତୁମେ ଯାଇନ,—ତୁମେ ଯାଇନ—

ସଦନ—କେମିତି ଲାଗୁଛି ସାବି ?

ସାବିତ୍ରୀ—( ନିରୁତ୍ତର )

ସଦନ—ମୋ ଉପରେ ଖୁବ୍ ରାଗିଛୁ ନା ?

ସାବିତ୍ରୀ—ତୁମେ ଯାଇ ନା ?

( ବାହାରୁ ଅନେକ ଲୋକ ଡାକିଲେ "ସଦନ, ସଦନ" )

ସଦନ—ମୁଁ ଯିବ ସାବ—ମୁଁ ଯିବ, ଛଳେ କଥା ଦେଇଛୁ ମୁଁ ଯିବ ।

ସାବନ୍ତୀ—ଯିବ ? ସତ କହୁଛ ଯିବ ?( ଡାକ ପକାଇଲା )

ସଦନ—ହଁ, ହଁ, ମୁଁ ଯିବ—( ସାବ୍ତୀକୁ କଠେଇ ନେଇ ଯାଉ ଯାଉ )

ଜଗତର ଦେବାଟେ ! ଘନ ! କୁରୁପା ! ଛୁହ ମୁଁ ଯାଉଛୁ ( ସାବ୍ତୀକୁ ନେଇ ଘର ଭିତରେ ରଖି ଦେଇ ଧନୁଶର ନେଇ ଗଲବେଳେ ) ମା ବହୁଣେଇ ! ତୋର ଭରସା ମା ତୋର ଭରସା

---

## ୭ମ ଦୃଶ୍ୟ

( ପୂର୍ବ ସରଗଡା ବୁଢା, ବାଡ଼ ଠେକ ଦେଇ ଦେଇବା ଅଗରେ ବୁଲୁଛି, ପଛରେ ବସ୍ତୁଗି ସାଟିର ଶବ୍ଦ ଶୁଣାଗଲା )

ବସ୍ତୁଗି—ମାଉସୀ ।

ବୁଢା—( ଅଟକ ପଡି ) କିଏ କିଏଲୋ ?

ବସ୍ତୁଗି—ଗଙ୍ଗପଡ଼ାକୁ ବାଟଟା ଟିକଏ ଦେଖାଇ ଦିଅନ୍ତନ ମାଉସୀ ?

ବୁଢା—କିଏଲୋ ତୁ ? ନୂଆ ଲୋକ ହେବୁ ସତ୍ୟ···ସକାଳ ଝପ ଝପିଅଛୁ ବାଉ ବା କହନାହିଁ । ଏକୁଟିଆ କମିତ ମାଇପଟାଏ ଯାଉଛୁ—କୁଆଡ଼େ ବା ?

ବସ୍ତୁଗି—କଣ କହବ ମାଉସୀ—ସେମିତ ଜରୁର କାମଟାଏ ପଡ଼ିଛି ମୋର······ ।

ବୁଢା—ହଉ ଅ, ଅ, ଦେଖେଇ ଦେଉଛ ।

କସ୍ତୁରୀ—ତମେ କେତେଦୂର ଯିବ ମାଉସୀ ।

ବୁଢ଼ୀ—କିଏ ଜାଣେ କେତେଦୂର ଯିବା ।

କସ୍ତୁରୀ—ମନ ତମେ ଜାଣନା, ତମେ କେତେଦୂର ଯିବ ।

ବୁଢ଼ୀ—ଜାଣି ନାହିଁ ବୋଲିତ ଏତେ ସକାଳରେ ବାହାରି ଆସିଛି—ଆଜେ ବାରଜାତିର ଶାଗ ପତ୍ର—ଖରା ମୁଣ୍ଡକୁ ଉଠିବା ଆଗରୁ ମୋତେ ତୋଳିବାକୁ ହେବ—ସେ କଣ ଖାଲି ସାଉଣ୍ଟିବା କଥା ହୋଇଚି କି, ଯିବ ଅଉ ଆସିବ— ।

କସ୍ତୁରୀ—ଏତେ ପ୍ରକାର ଶାଗ କଣ ହେବ ମାଉସୀ ।

ବୁଢ଼ୀ—ମୋ ପୁଅ ପାଇଁ ସବୁ ରାନ୍ଧିବିଲେ— ।

କସ୍ତୁରୀ—ତମ ପୁଅ— ?

ବୁଢ଼ୀ—ଅଲେ ହଁ ହଁ ମୋ ପୁଅ, ରକ୍ସି—ତୁ ପାଇକ ପୁଅ ନୋହୁକି—ଲେ । ଏ ଦୁନିଆ ହାଲଚାଲ ତତେ ଜଣା ନାହିଁକି ?

କସ୍ତୁରୀ—ନାଇଁ ମାଉସୀ ମୁଁ ତ କିଛୁ ଜାଣି ନାହିଁ ।

ବୁଢ଼ୀ—ଅଲେ ବାହା ଆଗେ କହିବୁ ନାହିଁଟି । ମେଳି ହେବ । ସେଥିପାଇ ସବୁ ରକ୍ସି ପୁଅ ଗାଁ ଗାଁ ହୋଇ ବୁଲୁଛନ୍ତି । ପାଇକ ପୁଅମାନଙ୍କୁ ମେଳାଉଛନ୍ତି । ହେଲେ ଫିରିଙ୍ଗି ଗୋଡ଼େ ଗୋଡ଼େ ଲାଗିଛନ୍ତି, ସେଥିପାଇଁ ପୁଅ ମୋର ବନରେ କେଉଁଠି ଲୁଚିରହେ । ତା ରୂପ ଭେଳ କେହି ଦେଖି ପାଆନ୍ତି ନାହିଁ । ଅଉ ବେଳବାଳ ଜନ୍ତି କିଶବଦ୍ ରାତିରେ ଗାଁରେ ଅସି ହାଜର ହୋଇଯାଏ । କେଉଁ ବନ କେଉଁ ଗାଁକୁ ଅସିବ ତାର କଣ ଠିକ୍ ଅଛି । ହେଲେ ଅମେ ହେଲି

ପାଇବ ବୁଲର । ଅମ ଘରୁ ଅପ ବର୍ଷିକୁ ଦଣ୍ଡା ନ ଖୁଅଇ
ଘଉଡ଼ ଦେବୁ ?

ବସ୍ତୁସ—ଏ ସବୁ ଭଣ ସତ ପାଜସୀ ?

ବୁଢ଼ା—ମସ—ଅଚ୍ଛ ଭଣ ମିଛ ଵଲେ ? ସୁଣିକୁ—ଭାଲ୍ ଆସିଥିଲ ସେ ଅର ଗାଁକୁ । ପଧାନ ଜ୍ଵବଯା ଖଣ୍ଡଖିସ ଵର ରଖିଥିଲ । ଦେଲେ ମୋ ପୁଅ ଭଦ୍ରୁଲ ଢାବ ଖଣ୍ଡ ଖିସରେ ନୂହେଁ—ଷାଭ ମୃଗରେ ଲେଭ । ସେଇଥିପାଇଁ ଅକ୍ଷ ସମସ୍ତେ ଖାଘ ଜ୍ଞ ବର୍ଷି ପାଇଁ ଅଟେକଇ ବସିବେ—ଲେ । ଢଏ ଜାଣେ ଯୁଅଣ୍ଟା ପଢ ଅସି ମୋ ଟାଟି ଭଦାଣ୍ଟବେ ହାତପାଟେ ।

ବସ୍ତୁସ—ସେଇଥିପାଇଁ ଏ ସୁବାବଣ୍ଟାକୁ ଖାସ ଦେଖାଳ ମାଲ୍ଲ ?

ବୁଢ଼ା—ହଁ ଲେ ସେଇଥିପାଇଁ, ଭେଟେ ଫଟେଇ ହଜୁରୁମ ।

ବସ୍ତୁସ—ଭଣ ପାଜସୀ ବର୍ଷି ଜାଟବ ?

ବୁଢ଼ା—ଜାଣବ ନାହିଁ ? ଭଣ ବୋଲ୍ ପାଇଲ୍ଲକ ମୋ ପୁଅକୁ ? ନାଚୁଛୁଅଛି—ଫିରଙ୍ଗି ଢାବ ଲଞ୍ଜରେ ହାତ ପାରୁଛି—ଏବେ ଗ୍ରେଟ୍ ସମାଜ—ଅ—ମ—ଭେଟେ ଫଟେଇ ହଜୁରୁ ?...
ଓଃ......

ବସ୍ତୁସ—ନାଲ କହୁ ନାହିଁ—ଚୁଲ—( ଜବସ୍ୟେ ଚୁଲିଗଲେ )

---

## ୮ମ ଦୃଶ୍ୟ

(ବାଲ୍ ସାହୁ ନବର—ଗଜପତିଙ୍କ ଆଗରେ ଛଦ୍ମ ବେଶରେ ଠିଆ ହୋଇଛନ୍ତି ବର୍ଷି- )

ମୁକୁନ୍ଦ—ବର୍ଷି—

ବର୍ଷି—ପ୍ରଭୁ—

ମୁକୁନ୍ଦ—ସେଦିନ ମୁଁ ତୁମକୁ ବୁଝି ନ ପାରି ତୁମର ଅମର୍ଯ୍ୟାଦା କରିଥିଲେ ମଧ୍ୟ, ତୁମେ—

ବକ୍‌ସି—ତା କଥାରି କେବେ ସ୍ମର୍ଭ୍ୟ, ଗଜପତିଙ୍କ ଅଲର ଅବମାନନା କରି ବକ୍‌ସି କଣ କେବେ ଗଜପତିଙ୍କୁ ଅବମାନନା କରିପାରେ । କିନ୍ତୁ—

ମୁକୁନ୍ଦ—କିନ୍ତୁ କଣ ବକ୍‌ସି—?

ବକ୍‌ସି—କିଛି ନୁହେଁ ସ୍ମାମୀ— ।

ମୁକୁନ୍ଦ—ଗୋପନରେ ରଖିଥିବାର ଚେଷ୍ଟା କରୁଛ- । ମୁଁ ଜାଣେ ପାଇକମାନେ ମତେ ଅପଦାର୍ଥ ମନେ କରୁଛନ୍ତି- ଏ ମେଳରେ ସେମାନେ ମୋର ସହଯୋଗ ଇଚ୍ଛା କରୁ ନାହାନ୍ତି-କିନ୍ତୁ ମୁଁ କଣ କରିବି ତୁମେହି କୁହତ ? ଏ ବାଲି ସାହିର ଉଆସ—ପିଞ୍ଜରି ଘେରା କନ୍ଦୀଶାଳାରେ ମୁଁ କଣ ନିଜ ସୁଖରେ ରହୁଛି-ସବର ଅଇଁଠା ଖାଇବାରେ ଜୀଇ ରହିବା କଣ ମତେ ସୁଖ ଲାଗୁଛି ? ମୁଁ ଯେତେ ଅଭାଗା ହୁଏ—ମୁଁ ପରା କପିଳେନ୍ଦ୍ର, ପୁରୁଷୋତ୍ତମ, ପ୍ରତାପରୁଦ୍ରଙ୍କର ବଂଶଧର,—

ବକ୍‌ସି—ଅପଣ ବିଚଳିତ ହୁଅନ୍ତୁ ନାହିଁ ସ୍ମାମୀ । କହୁଲି ପରା କେବଳ ପ୍ରସ୍ତୁତ ଅଛି-ସାରା ଓଡ଼ିଶା ନିଆଁରେ ଜୁହୁଳ ରହିଛି-ମୁଁ ସବୁ ନିଜେ ଦେଖି ଆସିଛି—ଖାଲି ସେହି ଶୁଭ ମୁହୂର୍ତ୍ତର ଅପେକ୍ଷା ସ୍ମାମୀ-ଏକସମୟରେ ନିଆଁ ଜଳିଉଠିବ- ।

ମୁକୁନ୍ଦ—ହଁ ବକ୍‌ସି ହଁ । ସେହି ଶୁଭମୁହୂର୍ତ୍ତର ଅପେକ୍ଷା । ଦେଖୁନା-ଆଜି ତୁମର ସାକ୍ଷାତପାଇଁ ତୁମର ବନ୍ଦୀ ରାଜା କିପରି ଶତ ସିଂହର ପ୍ରଗଳ୍‌ଭରେ ଜାଗିଉଠିଛି- କିନ୍ତୁ ବକ୍‌ସି ମୁଁ କଣ ଜାଗି ନ ଥିଲି ? ଭାଗ୍ୟର ଲିଖନ ଜାଣେନା ସୁଅ ମୁହଁର ଫୁଲ ପରି ମୁଁ କାହିଁକି ଭାସି ଭାସି ଚାଲିଛି—

ବକ୍ସି—ସେ ସବୁ ସତ୍ତକଥା, ଆଜ ଭୁଲି ଯିବାକୁ ପଡ଼ିବ ପ୍ରଭୁ—ଆଜ କର୍ତ୍ତବ୍ୟର ଅହ୍ୱାନ ଆସିଛି—ଆଜ ମା ପାଇଁ ସେବା କରିବାର ସୁଯୋଗ ଆସିଛି— ।

ମୁକୁନ୍ଦ—ହଁ ଆସିଛି । ସେଇଥି ପାଇଁତ ଫିରଙ୍ଗି ପ୍ରାଣର ଅଡକ—ବକ୍ସିର ମୁଣ୍ଡ ପାଇଁ ଚରଣ ଘୋଷଣା କରିଛନ୍ତି ଶହ ଶହ ଟାଙ୍କି ନଶ୍ୱର ଭୂମି— । ନା ନା ବକ୍ସି ତୁମେ ବର୍ତ୍ତମାନ ବଦାୟ ନିଅ—ଏ ସ୍ଥାନ ତୁମ ପାଇଁ ନିରାପଦ ନୁହେଁ ଫେରିବର ଆସିବାକୁ ଖବର ପାଠାଇ ଥିଲି—ଯେ କୌଣସି ମୁହୂର୍ତ୍ତରେ ଅସି ଯାଇପାରେ ।

ବକ୍ସି—ଅସୁଚ୍ଛମୁ—ଫିରଙ୍ଗି ସେ, ଜାହୁଁ କାଣିବ, ଶୁପ୍ତ ସିଂହ ସାମାନ୍ୟ ଯେ ଅଘାତରେ ମଧ୍ୟ ଜାଗି ଉଠେ । ଅଜ ଯେତେବେଳେ ସେ ଜାଗି ଉଠେ—ସେ ଜାଗି ଉଠେ ଖର ସିଂହର ପରାକ୍ରମରେ—ଅପଣ ଚିନ୍ତା କରନ୍ତୁ ନାହିଁ । ଅପଣ ଶୀଘ୍ର ପ୍ରସ୍ତୁତ ହୋଇଯାନ୍ତୁ ଅତଶୀଘ୍ର ଏ ବାଲିସାହି ନଗର ତ୍ୟାଗ କରିବାକୁ ପଡ଼ିବ—

ମୁକୁନ୍ଦ—ଯିବାର ବ୍ୟବସ୍ଥା ?

ବକ୍ସି—ଜଅସବୁ କେତେ ଘାଡ଼ୁଣ୍ଡ ଅଗେଇ ଗଲେ କରୁଣାକର ସର୍ଦ୍ଦାର ଅପଣାଙ୍କୁ ନେଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେବ ।

ମୁକୁନ୍ଦ—ଏଇ ମୋର ଶେଷ ଚେଷ୍ଟା ବକ୍ସି—ଏଥର ଯଦି ବିଜୟ ହୁଏ—ତାହେଲେ ମୁଁ ହେବି ନବକୋଟି କର୍ଣ୍ଣାଟୋତ୍କଳକଳବର୍ଗେଶ୍ୱର ଇକ୍ଷେ ରାଜାଙ୍କର ମଜଡ଼ ମଣି ଗଜପତି ମୁକୁନ୍ଦଦେବ—( ବାହାରେ ଘଣ୍ଟା ଧ୍ୱନୀ ହେଲା ) ଫେରିବର ଅସିଗଲା ବକ୍ସି—

ବକ୍ସି—ଚିନ୍ତା ନାହିଁ ପ୍ରଭୁ, ଶହ ଶହ ଫିରିଙ୍ଗି ପ୍ରହରୀର ଆଖିରେ ଧୂଳି ଦେଇ ଯିଏ ରାଜ ନଗର କଟକକୁ ଆସିପାରେ ତା ପକ୍ଷରେ—( ବକ୍ସି ଓ ରାଜା ଚାଲିଗଲେ କଟକକୁ ଓ ଫ୍ଲେଚରଙ୍କୁ ନେଇ କେବଳ ରାଜା ପ୍ରବେଶ କଲେ )

ମୁକୁନ୍ଦ—ଆସନ୍ତୁ—ଆସନ୍ତୁ—ମହାମାନ୍ୟ ଫ୍ଲେଚର ସାହେବ, ଆସନ ଗ୍ରହଣ କରନ୍ତୁ । ଫିରିଙ୍ଗି ଦ୍ୱାରା ମୁଁ ନିଜ ନଗରରେ ଆଜି ବନ୍ଦୀ ସାହେବ, ତଥାପି ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ନର୍ତ୍ତକୀର ବ୍ୟବସ୍ଥା ମଧ୍ୟ କରିଛି—ହିଁ ସାହେବ ଆପଣ ଯେଉଁ ନର୍ତ୍ତକୀ ମୋ ପାଇଁ ଯୋଗାଇ ଦେଇଛନ୍ତି ମୋର ଅଳସ ସମସ୍ତ ମୁହୂର୍ତ୍ତ ସଙ୍ଗୀତ ମୁଖର କରି ଦେବା ପାଇଁ, ସେହି ନର୍ତ୍ତକୀ—

ଫ୍ଲେଚର—No. No. ନାଚବାଲି—ହାମେ ବହୁତ ନାଚ ଦେଖିଛି, ମୋ କଥାର ଉତ୍ତର ଦିଅ ।

ମୁକୁନ୍ଦ—ତା ହିଁ ହେଉ—କିନ୍ତୁ ତୁମେ ଯଦି ଠାକୁର ରାଜାର ଆଦେଶରେ ନାଚ ନ ଦେଖ ମୁଁ କିଛି ଶୁଣିବି ନାହିଁ ।

ଫ୍ଲେଚର—Oh, you are very sentimental ତୁମର ଜିଦ୍ ବହୁତ୍ । ତୁମେ ଜାନ—ହାମେ Important କାମରେ ଆସିଛି But-ଅଚ୍ଛା ହାମେ ତୁମ କଥା ଫିଙ୍ଗିବ ନାହିଁ, ତୁମ ନାଚ ହାମ ଦେଖିବ ।

ମୁକୁନ୍ଦ—ନର୍ତ୍ତକୀ··( ପଶିଆସିଲେ ନର୍ତ୍ତକୀର ଦଳ ପାଦର ତାଳେ ତାଳେ ଫୁଟିଲା ସେମାନଙ୍କର ସଂଗୀତ )

କୁଞ୍ଜ କାନନେ ଡାକେ କୋଇଲି
ଅଜଣା ଅତିଥି ଆସିବେ ବୋଲି ଗୋ
ଆସିବେ ବୋଲି ॥

ମଳୟ ପବନ ଧୀରେ ଧୀରେ ବହୁ
ଅଗମନୀ ଗୀତ ଗଳ ତାନେ କହୁ
ବନ୍ଧୁ ଆଗମନେ ଧରଣୀ ପୁଲକେ
ବହଲାଅ ସ୍ମିତ ଲହର ଥର ॥
ତାତେ·········

ତରଣୀ ସଜାଇ ସେତେ ଫୁଲ ସଂଗେ
ନୟନେ ଭଟନ୍ତୁ ଆସେ ନାହିଁ କୁଂଜେ
ଶର ବାଂଛିତ ଦେଇଛ ଧରା ଗୋ
ବାନ୍ଧବ ଦେଇ ବାହୁର ଡୋର ॥
ତାତେ ଡୋଇଲି·········

ଫ୍ଲେଚର—( ମୁହଁ ଟେକି ଚାହିଁଲେ )

ମୁକୁନ୍ଦ—ଅତି ସାମାନ୍ୟ କଥା ! ବିଲାତୀ ପଦ ଦୁଇଟି ବ୍ୟବସ୍ଥା କରାଇ ପାରିବନି ତେବେ ସେହି ଜଗୁଆଳ ଦୁଇଟାଙ୍କୁ ଆଦେଶ ହେଲେ ହାଣ୍ଡିଅବୁ ଦୁଇଟା ନେବାକୁ ଅଛି—

ଫ୍ଲେଚର—What are you talking Raja like a nonsense—answer me—ଏଣୁ ତେଣୁ ବାଜେ କଥା କଣ ତୁମେ କହି ଯାଉଛ ମୋ କଥାର ଉତ୍ତର ଦିଅ ।

ମୁକୁନ୍ଦ—କେଉଁ କଥାର ଉତ୍ତର ?

ଫ୍ଲେଚର—I have not come here to enjoy dance or to drink ଆମେ ଏଠାକୁ ନାଚ ଦେଖିବାକୁ ବା ମଦ ଖାଇବାକୁ ଆସିନାହିଁ । ତୁମେ ଜାଣ କି ପୁଣି ଜଗବନ୍ଧୁ again ପାଇକମାନଙ୍କୁ ମେଳି କରାଇବାର ଚେଷ୍ଟାରେ ଅଛି ?

ମୁକୁନ୍ଦ—ମେଳି !

ଫ୍ଲେଚର—Yes revolation—ବିଦ୍ରୋହ !

ମୁକୁନ୍ଦ—ବିଦ୍ରୋହ—ସତେ ସାହେବ ଏସବୁ ମୁଁ କିଛି ଜାଣି ନାହିଁ । ମୋର ବା ଜାଣି ଲାଭ କଣ ଅଛି । ଆପଣ ସାହେବ ଯେମେ କେବେ ପିଞ୍ଜରାରେ ଚଢ଼େଇ ଦେଖିଛ । ( ଫ୍ଲେଚର ଗାଲ୍ ଗୁଣ୍ଡିକେ ) ପିଞ୍ଜରାର ଚଢ଼େଇ—ସେ କଣ ଜାଣେ ବାହାରେ କେଉଁ ଅନର୍ଥର ବନ୍ୟା—ସେ ବା କାହିଁକି ତାହାର ହିସାବ ରଖିବ ।

ଫ୍ଲେଚର—But Raja tell me what to do ? ଏସବୁ ବାଜେ କଥା କାହିଁକି । ସତେ ବର୍ତ୍ତମାନକୁହ କଣ କରିବାକୁ ହେବ ?

ମୁକୁନ୍ଦ—ସେ ସମ୍ପର୍କ ସାହେବ, ହୁଏତ ତୁମେ ମତେ ଦେଇଥାନ୍ତ ମୁଁ କଣ କହିବି—

ଫ୍ଲେଚର—Don't slip up your burden like that—ନିଜର ଦାୟିତ୍ୱଟା ଏପରି ଖସାଇ ଦିଅ ନାହିଁ । ତୁମେ ହେଲ ରାଜା—ଦେଶରୁ ବିଦ୍ରୋହ ହେଲେ ତାକୁ ଦମନ କରିବା କର୍ତ୍ତବ୍ୟ ହେଉଛି ତୁମର ।

ମୁକୁନ୍ଦ—ମୋର ?

ଫ୍ଲେଚର—Yes ହଁ ତୁମର—ଗୁରୁଅଙ୍କ ପାଇକମାନେ ସେଗଲ ଜର୍ମ ଘର ମାଟି ଉଠିଛନ୍ତି । In such circumstances have you no duty ? ଏପରି ପରିସ୍ଥିତିରେ ତୁମର କଣ କର୍ତ୍ତବ୍ୟ ନାହିଁ ।

ମୁକୁନ୍ଦ—ପୁଣି ତ ସେହି କର୍ତ୍ତବ୍ୟ ପ୍ରଶ୍ନ, କେଉଁ କର୍ତ୍ତବ୍ୟ ?

ଫ୍ଲେଚର—ତୁମ ପ୍ରଜାମାନଙ୍କର ସୁଖ ଦେଖିବା—ବିଦ୍ରୋହ ଦମନ କରିବା ।

ମୁକୁନ୍ଦ—ମୁଁ ଏମିତ ବେଙ୍ଗୁ ରଜାରେ ରଜା ଯେ ପ୍ରଜାର ସୁଖ ଦେଖିବ—ତା ଛଡ଼ା ଗୁଲ ଏଇଠି ଅନନ୍ଦ କରିବା ଗୀତ ଗାଇ—ଖାନା ଖାଇ··ନର୍ତ୍ତକୀର ନାଚ ଦେଖି···

ଫ୍ଲେଚର—I don't understand you—ମୁଁ ତୁମକୁ ବୁଝୁନାହିଁ କଣ ତୁମେ କହୁଚ । No No Raja—ସେ କଥା ହେବ ନାହିଁ । ତୁମେ ହେଲ ରଜା—ତୁମର ଗୋଟାଏ କଥା ଯାହା କରିବ, ଆମର କୋଡ଼ିଏ କଥା ତା କରି ପାରିବ ନାହିଁ । ତୁମେ ଗୋଟାଏ ଅଦେଶ ନାମା ଜାରିକର ।

ମୁକୁନ୍ଦ—ଅଦେଶ ନାମା ?

ଫ୍ଲେଚର—ତୁମେ ରଜା ହିସାବରେ ପାଇକମାନଙ୍କୁ ଅନୁରୋଧ କର ସେମାନେ ମେଳରେ ଯୋଗ ଦେବେ ନାହିଁ । ତୁମେ ଘୋଷଣା କର ବକ୍ସି ଗୋଟାଏ ବିଦ୍ରୋହୀ (ରଜା ହସିଲେ) Do it Raja do it ତୁମେ କର ରଜା ତୁମେ କର—ମୁଁ ତୁମକୁ କହୁଛି ତୁମେ କର ।

ମୁକୁନ୍ଦ—( ଠୋ ଠୋ କରି ହସି ଉଠିଲେ )

ଫ୍ଲେଚର—What mekes him laugh ? ତୁମେ ହସିଲକାହିଁକ ;

ମୁକୁନ୍ଦ— ( ସେହିପରି ହସୁଥାନ୍ତି )

ଫ୍ଲେଚର—ରଜା—ରଜା—ରଜା— you tell me ତୁମେ ଉପ୍ତକତ୍ ନାମାରେ ଦସ୍ତଖତ୍ କରିବ କି ନାହିଁ ?

ମୁକୁନ୍ଦ— ( ପୁଣି ଜୋରରେ ହସି ଉଠି ) ରାଣି !—ଶୁଣୁଚ ରାଣି—ମାନ୍ୟାଙ୍କ ମୁକୁନ୍ଦଦେବଙ୍କୁ ଗୋଟାଏ ହୁକୁମନାମା ଜାରି କରିବାକୁ ହେବ ! ପାଇକମାନେ ମେଳରେ ଯୋଗ ଦେବେ ନାହିଁ । ଶାନ୍ତ ହେବେ···

( ସେ ଅଦ୍ଭୁତ ଜୋରରେ ହସି ଉଠିଲେ )

ଫ୍ଲେଚର—Raja, Raja, Raja—ରଜା—ରଜା—ରଜା—

—✿—

# ଚତୁର୍ଥ ଅଙ୍କ

## ୧ମ ଦୃଶ୍ୟ

(ପଙ୍କଗଡ଼ାସ୍ଥ ପ୍ରାନ୍ତରର ଗୋଟିଏ ଗୁମ୍ଫା—ଗୁମ୍ଫାଟି ସାମାନ୍ୟ ଅଂଧାରୁଆ ହୋଇଛି । ତାର ଖୋଲିବାଟେ ସନ୍ଧ୍ୟାର ଦେଖା ଯାଉଛି ଧନୁ ବର୍ଚ୍ଛା ଧରି ପାଇକମାନେ ପହରା ଦେଉଛନ୍ତି । ଅଳ୍ପ କିଛିଏ ଦୂରରେ ତୋପ ଗୁଡ଼ାକ ଗଦା ହୋଇ ଥିବାର ଦେଖାଯାଉଛି । ବକ୍ସି ତାଁ ଭିତରେ ଏଣେ ତେଣେ ହୋଇ ବୁଲୁ ଥିବାର ଜଣା ଯାଉଛି । ହାତରେ ତାଙ୍କର ଏକ ମାନଚିତ୍ର ··ତୋପ ଗୁଡ଼ାକରୁ ଅନବରତ ଗୋଳା ବର୍ଷଣ ଚାଲିଛି )

ବକ୍ସି—କରୁଣା କର, କରୁଣା କର । (କରୁଣାକର ପ୍ରବେଶ ) କଟକର କମାଣର ଗୋଳା ବର୍ଷଣ ଚାତ ଅନେକ ହେଲଣି ପାଇକମାନଙ୍କୁ ବିଶ୍ରାମ ଦିଅ ।

କରୁଣାକର—ସେ କଣ ହେ ବକ୍ସି ?

ବକ୍ସି—ପ୍ରତିବାଦ କର ନା କରୁଣା କର ପ୍ରତିବାଦ କର ନା···ଏ ଗୋଳା ବାରୁଦର ଲଢେଇ ଆମକୁ ସୁହାଏ ନା··· ଢାଲ, ତରବାରି, ତୀର, ବର୍ଚ୍ଛାହିଁ ଆମର ସବୁ ।

କରୁଣାକର—ଫିରଙ୍ଗି ଏଇ ଘାଟିଟା ଛାଡ଼ି ଯିବା ପରେ ଯେତେବେଳେ ଏ ଗୁଡ଼ାକ ପାଇଛୁ···

ବକ୍ସି—ମନା କରୁନାହିଁ ତାର ସଦ୍ବ୍ୟବହାର କରିବାକୁ କିନ୍ତୁ ବେଳ ଅଛି, ବର୍ତ୍ତମାନ ନୁହେଁ—ଯାଅ ବନ୍ଦ କର ।

କରୁଣାକର—ଆଚ୍ଛା...

( କରୁଣା କର ବାହାରି ଗଲେ କମାଣର ଶବ୍ଦ ବନ୍ଦ ହୋଇଗଲା ପରି ଆସିଲା କଦ୍ଦୁସ )

କଦ୍ଦୁସ—ସାନ୍ତ୍ରେ !

ବକ୍ସି—(ଚମକି ପଡ଼ି ) କିଏ ?

କଦ୍ଦୁସ—ମୁଁ

ବକ୍ସି—କଣ ?

କଦ୍ଦୁସ—ଅନୁମତି ମିଳିଲେ ଗୋଟାଏ କଥା କହନ୍ତି ସାନ୍ତ୍ରେ ।

ବକ୍ସି—କି କଥା ? କଣ ?

କଦ୍ଦୁସ—ଏ ଲଢେଇ ଆଉ କେତେ ଦିନ ଚାଲିବ ?

ବକ୍ସି—କିଏ ଜାଣେ ହୁଏତ ଆଉ ବେଶୀ ଦିନ ନୁହେଁ ।

କଦ୍ଦୁସ—ତେବେ ସାନ୍ତ୍ରେ ଏ ମାଟିଟା ଛାଡ଼ି ଆଉ କୁଆଡେ ଯିବି ନାହିଁ ।

ବକ୍ସି—ସେ କଣ କଦ୍ଦୁର ?

କଦ୍ଦୁସ—ଡାହାଣ ଆଖିଟା ମୋର ଡେଇଁଲା ଡାହାଣ ବାହୁଟା ମୋର ।

ବକ୍ସି—ମାନେ ?

କଦ୍ଦୁସ—ଏ ସବୁ ଅମଙ୍ଗଳର ଚିହ୍ନ !

ବକ୍ସି—କଦ୍ଦୁସ ?

କଦ୍ଦୁସ—ମୁଁ ଅମାନିଆଁ ହେବି ନାହିଁ ତମେ କେବେ ଯିବ ନାହିଁ । କେବେ ଯିବ ନାହିଁ ।

ବକ୍ସି—ତର୍କ କରିବାକୁ ମୋର ସମୟ ନାହିଁ । ସାରା ମୁଲକଟା ଅଜି ଦୁ ହୁ ହୋଇ ଜଳୁଛି । ତୋ ସଙ୍ଗେ ଆଲୋଚନା କରିବାକୁ ମୋର ଅବସର ନାହିଁ ।

କସ୍ତୁରୀ—ନାହିଁ ସାନ୍ତ୍ରେ, ସେ କଥା ମୁଁ କହୁନାହିଁ ଯେ, ତେମେ କୁହନ୍ତ ତେବେ.ଅଜ କୁଆଡ଼େ ଯିବ ନାହିଁ ।

ବକ୍ସି—ଭିତରକୁ ଯା କସ୍ତୁରୀ—ରାଣୀ ମା କେତେଣେ ଏକୁଟିଆ—

କସ୍ତୁରୀ—ମତେ କଥା ନ ଦେଲେ ମୁଁ ଯିବ ନାହିଁ !

ବକ୍ସି—ଏ ଯୁଦ୍ଧରେ ସେନାପତି କିଏ ତୁ ନା ମୁଁ ?

କସ୍ତୁରୀ—( ମୁଣ୍ଡ ତଳକୁ ପୋତିଲା )

ବକ୍ସି—ପ୍ରାଣ ଭୟରେ ଯଦି ସେନାପତିକୁ ଏଇଠି ରମଣୀର ଅଞ୍ଚଳ ତଳେ ଆଶ୍ରୟ ନେବାକୁ ହୁଏ—ଯୁଦ୍ଧ ଜୟ କରିବ କିଏ ? ପାଇକ ନା ଫିରଙ୍ଗି ?

କସ୍ତୁରୀ—ମୋ କଥା ବୁଝି ପାରୁ ନାହାଁନ୍ତି ସାନ୍ତ୍ରେ ?

ବକ୍ସି—ବୁଝିବି, ଆଉ ବୁଝିବାର କଣ ବାକି ଅଛି, ?

କସ୍ତୁରୀ—ସାନ୍ତ୍ରେ ।

ବକ୍ସି—( ହଠାତ୍ ନରମ ହୋଇ ଯାଇ ) ତାହିଁକି କସ୍ତୁରୀ ତୁ ଘର ପର ବକ୍ସିର ପଛେ ପଛେ ଧାଇଁ ବୁଲୁଛୁ । ତାହିଁକି ମନବୋଧଟାର ଅଣି ଦେଲୁ ଚେତନା, ଆଉ ତାହିଁକି ଅଙ୍କ ଛାର ପଥରର ମନକୁ ଓଟଁର ଓର ହାଲୁକା କରି ଦେବାର ଚେଷ୍ଟା କରୁଛୁ ?

କସ୍ତୁରୀ—ବୁଝିପାରୁନାହାଁନ୍ତି ସାନ୍ତ୍ରେ, କୁହତ.କଣ କହୁ ମୁଁ ବୁଝାଇବି

ବକ୍ସି—କସ୍ତୁରି......

କସ୍ତୁରୀ—ହିଁ ସାନ୍ତ୍ରେ ଥରେ ଆଖି ଦୁଇଟାକୁ ମୋର ଚାହାନ୍ତୁ । ସେଇଠି ପାଇବେ ତାର ଉତ୍ତର ।

ବକ୍ସି—( ଚନ୍ଦ୍ରସିଙ୍କୁ ବକ୍ଷ ରୁନ୍ଧି ଶିଶୁର ଭଳି କାନ୍ଦିଲେ )
ଚନ୍ଦ୍ରସ ! ଏତେ ଶକ୍ତି ତୁ ଅଛି ପାରୁ—ଏତେ ତେଜକୁ !

ଚନ୍ଦ୍ରସି—( ଅନ୍ତରରେ ତାର ଆର୍ତ୍ତନାଦ ) ସାନ୍ତେ ! ସାନ୍ତେ !

ବକ୍ସି—ଆଉ ସାନ୍ତେ ନୁହେଁ ବାଳକ। ଆଜି ସାନ୍ତେ ନୁହେଁ । ରଣାଙ୍ଗନର ଏ ବହ୍ନିଶିଖା ମଧ୍ୟରେ ତୁ ମତେ ବିଚଳିତ କରି ପକାଇଛୁ । ରଣ ଭୂମିରେ ନାରୀର ସ୍ଥାନ ନାହିଁ—ତଥାପି ସେଇ ନିଜର ସୁବିଧା ଦେଇ ମୁଁ ତୁ ଏତ ଭୁଲ କରିଛୁ—ବକ୍ସିଙ୍କୁ ଯୋଗାଇ ତାର ସବୁ ଭୁଲ ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ, ଆଜ୍ଞା ମଧ୍ୟ ଠିକ୍ ସେମିତି ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ।

ଚନ୍ଦ୍ରସି—ତେବେ ତାହାଙ୍କ ପ୍ରାୟଶ୍ଚିତ୍ତ କରିବ ସାନ୍ତେ ମୁଁ କରିବ ।
( ସେ ବକ୍ସିଙ୍କୁ ପ୍ରଣାମ କରି ଝଡ଼ପରି ଭିତରକୁ ପଶିଗଲା— ବକ୍ସି କଣ୍ଠ ରୁନ୍ଧି ନ ପାରି ଶିଶୁର ଭଳି କାନ୍ଦିଲେ )

ବକ୍ସି—ଚନ୍ଦ୍ରସ । ଚନ୍ଦ୍ରସ !
( ପଣି ଥମିଲେ ରକ୍ତପାତ—ଘୋଡାଙ୍କରୁ ଦୈନ୍ୟର ଯଥେଷ୍ଟ ପରିଚୟ ମିଳେ )......ସ୍ତବ୍ଧ

ମୁକୁନ୍ଦ—ରାତ ଅନେକ ହୋଇଯାଇଛି ବକ୍ସି...ତୁମେ ବିଶ୍ରାମ ନିଅ ! ନହେଲେ କାଲି ପ୍ରଭାତରେ ରାତ ଅନିଦ୍ରା ରହି ତମେ ତୁ ଏତ ଭଙ୍ଗି ପଡ଼ିବ ।

ବକ୍ସି—ଏ ଜୀବନରେ ବିଶ୍ରାମ ନାହିଁ ସ୍ତମ୍ଭ...କିନ୍ତୁ ଆପଣ ପଦ୍ମ ଘଣ୍ଟ ।

ମୁକୁନ୍ଦ—ମୋର ବି ନାହିଁ ବିଶ୍ରାମ ବକ୍ସି ?

ବକ୍ସି—ସ୍ତମ୍ଭ

ମୁକୁନ୍ଦ—ବକ୍ସି ( ଦୁହିଙ୍କ ଅକ୍ଷିରେ କାରୁଣ୍ୟ ଦୃଷ୍ଟି ପରସ୍ପରର ଅଜାଣତରେ ଅବଶ ହୋଇ ବସି ପଡ଼ିଲେ )

ତୁମେ ଆଜି ସାରାଦିନ କିଛି ଖାଇନା ବକ୍ସି ?

( ବକ୍ସି ହସି ଉଠିଲେ ବଡ଼ କାରୁଣ ସେ ହସ ) ତୁମ ରାଣୀମା ଯାହା ଫଳମୂଳ ସିଙ୍ଗାଇଥିଲେ ସେଥିରୁ ମୁଁ ଅଧେ ଖାଇଛି, ଆଉ ଅଧେ ତୁମ ପାଇଁ ଆଣିଛି ।

ବକ୍ସି—ଓମ୍ !

ମୁକୁନ୍ଦ—ଅମାନିଆ ହୁଅନା ବକ୍ସି ।

( ସେ ଅଣ୍ଟିରେ ଥିବା ଫଳମୂଳ କାଢ଼ିଲେ, ବକ୍ସି ଖାଇବାକୁ ଆରମ୍ଭ କଲେ )

ମୁକୁନ୍ଦ—ଦୁର୍ଗସବୁ ଯେଉଁ ଗୃହଶତ୍ରୁ କବ ଆସିଥିଲେ ?

ବକ୍ସି—ସେମାନେ ଆମ ପାଇକମାନଙ୍କ ସଙ୍ଗେ ମିଶି ଗଲେଣି । ଫିରଙ୍ଗି—ତାଙ୍କ ରାଜା ଅନାଦ ରାଜାଙ୍କ ଉପରେ ଯେଉଁ ଅତ୍ୟାଚାର କରୁଛି, ତାର ପ୍ରତିଶୋଧ ସେମାନେ କଡ଼ା ଗଣ୍ଡା ହିସାବରେ ନେବେ ।

ମୁକୁନ୍ଦ—ଆମ ପାଇକେ ବାଣପୁର ଥାନା ପରା…

ବକ୍ସି—ଚଢ଼ାଉ କରି ଖଜଣା ଖାନାଟା ଲୁଟି ନେଇଛନ୍ତି, ଆଉ ପାଇଛନ୍ତି ସେଠୁ ପନ୍ଦର ହଜାର ଟଙ୍କା ।

ମୁକୁନ୍ଦ—ପନ୍ଦର ହଜାର ।

ବକ୍ସି—ମାଛ ତେଲରେ ମାଛ ନ ଭାଜିଲେ ଚଳିବ କିପରି ? ଟଙ୍କା ନ ହେଲେ ଏତେ ଗୁଡ଼ାଏ ପାଇକ ଖାଇବେ କଣ ଆଉ ଲଢ଼େଇ କରିବେ କିପରି ?

ମୁକୁନ୍ଦ—ଖୋର୍ଦ୍ଧା କଥା କଣ ହେଲା ?

ବକ୍ସି—ସେଠିକି ସେଇ ଅବସ୍ଥା—

ମୁକୁନ୍ଦ—କଲେକ୍ଟର ବର୍ତ୍ତମାନ ବାଳକାଟିରେ ଡେରା ଦେଇଛନ୍ତି ?

ବକ୍‌ସି—ହଁ ସ୍ୱାମୀ, ୬୦ ଜଣ ସୈନ୍ୟନେଇ ଆସିଥିଲେ ଆମକୁ ବାଧା ଦେବାକୁ, କିନ୍ତୁ ଆମ ପାଇକମାନଙ୍କ ଆକ୍ରମଣ ହେତୁ ପଛଘୁଞ୍ଚା ଦେଇ ଫେରି ଯାଇଛନ୍ତି—ଦେଖୁନାହାନ୍ତି ସେ କମାଣ ଗୁଡ଼ାକ ପଡ଼ି ଥାଇ—ଯାହାହେଉ କଲେକ୍ଟର ବଡ଼ବା ଏ ଗାଂଗପଡ଼ା ମାଟିକୁ ଜୀବନରେ କେବେ ଭୁଲିବ ନାହିଁ ।

ମୁକୁନ୍ଦ—କଟକରୁ ଆଉ ନୂଆ ଫଉଜ ?

ବକ୍‌ସି—ଦଳେ ଖୋର୍ଦ୍ଧାକୁ ଓ ଆଉ ଦଳେ ପିପିଲିକୁ ଆସୁଛନ୍ତି ।

(କରୁଣାକର ପଶି ଆସି )

କରୁଣାକର—ଖବର ଅଶୁଭରେ ବକ୍‌ସି ଖବର ଅଶୁଭ ।

ବକ୍‌ସି—କଣ କରୁଣାକର ।

କରୁଣାକର—ଦଣ୍ଡା, ଗୋଟେ ଭଲ—

ମୁକୁନ୍ଦ—ଆଉ ଅବସ୍ଥା ?

କରୁଣାକର—ଭଲ ନୁହେଁ ।

ବକ୍‌ସି—ଭଲ ନୁହେଁ ?

କରୁଣାକର—ଭୟଙ୍କର ଅବସ୍ଥା ଆଗେ ଶୁଣ । ପାଇକ ଶ୍ରେଣୀଅମାନେ ଶିଲୁବା ଦରଅନର ଲୁଣ ଖାଇବାକୁ ଧରାଇ ବନ୍ଦ ଦେଇଛନ୍ତି- ନଇଲେ କି ପାଇକ ଶ୍ରେଣୀଅ ସେମାନେ ?

ବକ୍‌ସି—ମାଡ଼ ଦେଉଛନ୍ତି !

ମୁକୁନ୍ଦ—କେମିତି ପଡ଼ିଲ ବକ୍‌ସି ?

ବକ୍‌ସି—ଯୁଦ୍ଧ ଜୀବନ-ବାହାର ହୋଇଗଲା ସ୍ୱାମୀ । ନିରସ୍ତ୍ରକୁ ହତ୍ୟା କରିବା ପାଇକର ଧର୍ମ ନୁହେଁ । ଆଉ ଖବରଷ୍ଟା ?

କରୁଣାକର—ଏଇ ଲେଖାରେ ଅଛି ।

ବକ୍‌ସି—( ଲେଖା ପଢ଼ିସାରି ) ସ୍ୱାମୀ ମୁଁ ବାହାରିଲି ଲେଖାଇ ।

ସେଠି ଆମ ପାଇଲଟମାନେ ଫିଙ୍ଗର ସେଷ୍ଟରେ ଷ୍ଟପନ୍ତି ।

ରାଜା—ଲେଫ୍ଟାଇ···? ଏଟିକାର ଦ·ପ୍ତି ।

ବକ୍ସି—ଆପଣଙ୍କ ଉପରେ···ଆପଣ ଥାଉ ଥାଉ କିଏ ଅଉ ତାର ଦାୟିତ୍ୱ ନେବ ? ମୁଁ କେବଳ ପର ଘୁରି ବୁଲିବା ଲୋକ ।··· କିନ୍ତୁ ଦେଖନ୍ତୁ· ରାଜନ୍ ସବୁ ଗୀତ ଚକ୍ରାନ୍ତ ନୁହେଁ । ଅପଣ ସବୁବେଳେ ପାଇଲଟମାନଙ୍କର ଜୀବନକୁ···ସେମାନଙ୍କର ସୁରକ୍ଷାକୁ ଅନ୍ୟାନ୍ୟ ସମସ୍ତ ବିଷୟର ଉପରେ ସ୍ଥାନ ଦେବେ । ଯୁଦ୍ଧର ଜୟ ପରାଜୟ ବଡ଼କଥା ନୁହେଁ । ବଡ଼କଥା ହେଉଛି ସେନାପତି ଉପରେ ସୈନିକର ବିଶ୍ୱାସ । ମୁଁ ଆସୁଛି ରାଜନ୍···କରୁଣାକର ମୋ ଘୋଡ଼ା ପ୍ରସ୍ତୁତ ଅଛି ?

କରୁଣାକର—ଅଛିରେ ବକ୍ସି ଟିକ୍ ରଖିଛି ।

( ବକ୍ସି ଚାଲି ଯାଉଥିଲେ )

ରାଣୀ—( ପଛି ଆସି ) ବକ୍ସି ।

ବକ୍ସି—ଆପଣ ରାଣୀମା ପହଡ଼କୁ ବକେ ହେଇ ନାହାନ୍ତି ।

ରାଣୀ—ଦସ୍ଥରା କୁଆଡ଼େ ଗଲା ? ତାକୁ ସାର ଗୁଂଫାଠା ମୁଁ ଖୋଜିଲିଣି ।

ବକ୍ସି—ପାଉନାହାନ୍ତି ?—ପାଇବେ ନାହିଁ ରାଣୀମା, ପାଇବେ ନାହିଁ । ସେ ବୋଧେ—

ମୁକୁନ୍ଦ—କଣ କେସି—ଅଟକି ଗଲ କାହିଁକି ?

ବକ୍ସି—ସେ ବୋଧେ ରାତିର ଅଂଧକାର ଭେଦକରି କେଉଁ ଆଡ଼େ ଚାଲିଯାଇଛନ୍ତି । ତା ସାଂଗେ ଅଉ ଦେଖା ହେବନି । ହଁ ରାଣୀମା ଅଉ ଦେଖା ହେବନି

( ସେ ଯନ୍ତ୍ରଣାରେ ଛଟପଟ ହେଉଥିଲେ ହଠାତ୍ ଦୁର୍ବଳତା ବୁଝିପାଏ )

କରୁଣାକର ! ମୋ ଘୋଡ଼ା—ଚାହିଁ ମୋ ଘୋଡ଼ା—

କରୁଣାକର—ଚଞ୍ଚଳ ଯାଅ ବାହାରେ—

( ବକ୍ସି ବିନା ବାକ୍ୟରେ ରାଜାଙ୍କୁ ପ୍ରଣାମ କରି ଗୃହଦ୍ୱାର-ପଛେ ପଛେ ମଧ୍ୟ ବାହାରିଗଲେ କରୁଣାକର । )

ମୁକୁନ୍ଦ—କଣ ଦେଖୁଛ ରାଣି ?

ରାଣୀ—ବକ୍ସିଙ୍କୁ । ସତେ ସ୍ୱାମୀ ଅଦ୍ଭୁତ ଏ ବକ୍ସି । ପୁରୁଷର ପୌରୁଷରେ ବୀରର ବୀରତ୍ୱରେ ଗରୀୟାନ—ତଥାପି ମଣିଷର ମମତା ପ୍ରାଣକୁ ତାଙ୍କର ସ୍ୱପ୍ନ ମୁଖର କରି ପକାଉଛି । ସତେ ସ୍ୱାମୀ ଜୀବନର ଦୁଇଟି ବିପରୀତମୁଖୀ ପ୍ରବୃତ୍ତିରେ ବକ୍ସିଙ୍କର ଅନ୍ତର କମନୀୟ ଅଚ ନମନୀୟ ହୋଇ ପଡ଼ୁଛି ।

ମୁକୁନ୍ଦ—ତୁମେ କାବ୍ୟ ମୁଖର ହୋଇ ପଡ଼ୁଛ ରାଣି—

ରାଣୀ—ବିଶ୍ରାମ ନାଅନ୍ତୁ ପ୍ରଜାପତି ?

ମୁକୁନ୍ଦ—ପଥରର ଏ ବନ୍ଧୁର ଆସ୍ତରଣ ।

ରାଣୀ—ପଥର ନୁହେଁ ସ୍ୱାମୀ—ଏଇଠି ଏଇଠି ବିଶ୍ରାମ ନାଅନ୍ତୁ

( ନିଜର କୋଳକୁ ଲକ୍ଷ୍ୟ କରି )

ମୁକୁନ୍ଦ—ରାଣି ।

ରାଣୀ—ମହାରାଜା !

( ରାଣୀ ନିଜର କୋଳ ଦେଖାଇ ଦେଲେ ଓ ରାଜା ରାଣୀଙ୍କର କୋଳରେ ମଥା ରଖିଲେ—ତା ପରେ ସମସ୍ତ ଅନ୍ଧକାର ହୋଇଗଲା )



## ୨ୟ ଦୃଶ୍ୟ

( କସ୍ତୁରୀ ଏକ ବନପଥରେ ଗାଇ ଗାଇ ଚାଲିଛନ୍ତି—ଗୀତ ପରେ
ସମ୍ମୁଖର ପ୍ରବେଶ କଲା ସୁଧୀର )

କସ୍ତୁରୀର ଗୀତ ।

ଯା ଲାଗି ପ୍ରଦୀପ ଜାଳି
ବସିଛନ୍ତି ହୃଦ ଦେଉଳେ
ବୁଝିଲା ନାହିଁ ସେ ମରମର ବ୍ୟଥା ଠେଲି ଦେଲା
ବହୁଦୂରେ
ମମତାର ଜାଲ ଅଙ୍କାବ ବହୁନ୍ତି ବେର
ଛୁଟାଇ ପାରିଣା ପାରିବନି (ମୁଁ) ସେ ନିବିଡ଼ ଡୋର ।
ହୃଦଗହନର ଅକୁହା କଥା ମୋ
ରହିଥିବ ବୁକୁ ତଳେ । ୧ ।

ପାଗଳ ହୋଇଛି ମିଳନ ଆଶାର ଲାଗି
ନୟନର ଭାଷା ବନ୍ଧୁ ନ ପାରେ ବୁଝି—
ଯାଉ ଏ ଜୀବନ ତଥାପି ସେ ମୋର ଥାଉ ଚିର
ଅନ୍ତରେ । ୨ ।
ଯା ଲାଗି ପ୍ରଦୀପ ଜାଳି...... ।

ସୁଧୀର—( ଭଲ ଭାବରେ ନିରେଖି ଚାହିଁ ) ତୁ କସ୍ତୁରୀ ନା ?
କସ୍ତୁରୀ—ଏଁ କିଏ ? ବାଟଠାରେ ଝିଅ ଲୋକ ପରି ଚାହୁଁଛ ମତେ ?
ଛାଡ଼ ବାଟ ଛାଡ଼ ।

ସୁଧୀର—ଯୋଗକୁ ଭେଟ ହୋଇଗଲା ବୋଲି ଭାରି କପାଳିଆ
ଏଡ଼ା ।

ଚନ୍ଦ୍ରଶ୍ରୀ—କଣ ବାଟ ଛାଡ଼ିବ ନାହିଁ ଷାଣ୍ଢ ଭଳି ଡାକିବ ?

ଶୁଅର—ଡାକ କିଏ ମନା କରୁଛି ? ହେଲେ ପାଖରେ ଯଦି ଫେରିଙ୍ଗି ଫଉଜ ଥିବେ ଅସି ଧରିବେ—ପୁଣି ବାନ୍ଧି ନେଇ ଗାରଦରେ ରଖିବେ ।

ଚନ୍ଦ୍ରଶ୍ରୀ—ପୁଣି ଗାରଦରେ ରଖିବେ ?

ଶୁଅର—ହେଲେ ସିପାହୀ ସୁକସ୍ ତ ବନ୍ଧୁ ବନ୍ଧୁ ଛାଡ଼ିଛୁ—ତେବେ ମୁକୁଳାଇବ କିଏ ?

ଚନ୍ଦ୍ରଶ୍ରୀ—ଏସବୁ କଣ କହୁଚ ? କିଏ ତୁମେ ?

ଶୁଅର—ଚିହ୍ନି ପାରୁନ୍ତ ( ନିଜର ଗୁପ୍ତ ବେଶ ଫିଟାଇବା )

ଚନ୍ଦ୍ରଶ୍ରୀ—ଶୁଅରେ ! ମୁଁ ଅଦୌ ଚିହ୍ନି ପାରିଲି ନାହିଁ ।

ଶୁଅର—ତୁ ଏପରି ବାଘୁଣୀ ପରି ଦଣ୍ଡୁଛୁ କହୁଚ, ଏଣେ ଲୁଅଁଡ଼େ ଏକୁଟିଆ ବୁଲିଛୁ ?

ଚନ୍ଦ୍ରଶ୍ରୀ—ଲୁଅଡ଼େ ଅଛି ? ଏମିତ—

ଶୁଅର—ବକ୍‌ସିସାହେବ ଇଂଗପଡ଼ା ଘାଟିରେ ଅଛନ୍ତି ତ ?

ଚନ୍ଦ୍ରଶ୍ରୀ—ଥିଲେତ—ବର୍ତ୍ତମାନ ନ ଥାଇ ପାରନ୍ତି

ଶୁଅର—ଏପରି ବଡ଼ା ବଡ଼ା କଥା ଗୁଡ଼ା କଣ କହୁଚୁ ତୁ ? ମୁଁ ଗୋଟାଏ ଜରୁରି ଖବର ନେଇ ତାଙ୍କ ପାଖକୁ ବାହାରିଛି ଯେ—

ଚନ୍ଦ୍ରଶ୍ରୀ—ଖବରଟା ବୋଧେ ଖବର ହୋଇ ରହିଯିବ ଶୁଅରେ । ତୁମେ ଘାଟିରେ ପହଞ୍ଚିଲା ବେଳକୁ ସବୁ ସରି ଯାଇଥିବ—ଅଉ କିଛି ନ ଥିବ

ଶ୍ରୀଧର—କଣ କହୁଚୁ ତୁ ? ଶୁଣିବାଲୁ ବାଟେ ଦଳେ ଫିରଙ୍ଗି ଫଉଜ ଆସିଗଲେଣି, ସେମାନେ ଲୁଣ୍ଠି ଛପି ଚଢ଼ାଉ କରିବେ ବୋଲି ମସୁଧା କରୁଛନ୍ତି—ଏ ଖବର ନେଇ ବକ୍ସି ସାଅନ୍ତଙ୍କୁ ଯେ କୌଣସି ମତେ ଦବା ଦରକାର, ନ ହେଲେ—

କସ୍ତୁରୀ—ଫେରି ଚାଲ—ବାଟିକୁ ଯାଇଁ କରି ନାହିଁ—ସାଅନ୍ତେ ସେଠି ନାହାନ୍ତି— ।

ଶ୍ରୀଧର—ତାହାହେଲେ ଯେ ସର୍ବନାଶ ହେବ—ସାଅନ୍ତେ ବୁଝିବା ସୁଝିବା ଆଗ ହୋଇ ଶେଷରେ ଫିରଙ୍ଗି ଚକ୍ରାନ୍ତରେ ପଡ଼ିଗଲେ । ଦେଖାଯାଉ ଜଗନ୍ନାଥ ଭରସା—ଚାଲ କସ୍ତୁରୀ ଗଂଗପଡ଼ା ବାଟିକୁ ଫେରିଚାଲ—ସାଅନ୍ତଙ୍କ ପାଖକୁ ଫେରିଚାଲ— ।

କସ୍ତୁରୀ—ନା ଅଙ୍କ ନୁହେଁ ଶୁଆରେ ଯେଉଁଦିନ ଗୁରୁଅଙ୍କେ ଅଂଧକାର ଘୋଟିଯିବ ସେଇ ଅଂଧକାର ଭିତରେ ଫେରିବ ଶୁଆରେ ସେଇଦିନ ଫେରିବ, ହଁ ହଁ ସେଇଦିନ ଫେରିବ ( ଦୌଡ଼ି ଚାଲିଗଲା )

ଶ୍ରୀଧର—କସ୍ତୁରୀ ! କସ୍ତୁରୀ ! ( କସ୍ତୁରୀ ଅଡ଼କୁ ଦୌଡ଼ି ଯାଉଥିଲେ କିନ୍ତୁ ପୁନରାୟ ଫେରିଆସିଲେ ଠିକ୍ ଏହି ସମୟରେ ପଶି ଆସିଲେ ଦୁଇଜଣ ଫିରଙ୍ଗି ଗୋରା ସିପାହୀ—ସେମାନେ ଶ୍ରୀଧରକୁ କସ୍ତୁରୀକୁ ଦେଖିବା କଥା ପଚାରିଲେ )

୧ମ ସିପାହୀ—ହେ, ଓଃ ଗ୍ଲେଭଗ୍ରୀ ଦେଖା ହେଁ ? ନାଚୱାଲି ଗ୍ଲେଭଗ୍ରୀ Dance girl

ଶ୍ରୀଧର—( କଣ୍ଠ ଭୁଙ୍ଗ ଧଡ଼ାଇ ହୁଂକାର ଅଭିନୟ କରି ପଇସା ମାଗିକି ଖାଇବା ପାଇଁ )

୨ୟ ସିପାହୀ—ହେ ବେଲ୍ଟବ୍ ତୁମ୍‌ନେ ଦେଖା ହେ—ଏକ ଗୋସ୍ୱସି ପଡ଼ିଲ୍ସି ଘୋଡ଼ସ୍ୱା ?

ଶୁଅର—( ପୁନଃ ଅଭିନୟର ଅବୃତ୍ତି )

୨ୟ ସିପାହୀ—(କଥା ନକହୁ ଠାର କର କସ୍ତୁରୀ କଥା ପଗ୍ଭରିଲା )

୧ମ ସିପାହୀ—Leave him—he is dumb—ଘୁଂଗା ହାଏ ବୁଂଗା, ଇସକୋ ଛୋଡ଼ ଦୋ—

୨ୟ ସିପାହୀ—ନେହି ସାହେବ ଇସକୋ ଜରୁର ମାଲୁମ ହାଏ—ଓ କାହାଁ ଗଇ ହେଁ—ଇସକୋ କୁଛ ଦେନେସେ ଓ ଜରୁର୍ ବତଲା ଦେଗା ( ସେମାନେ କିଛି ଟଙ୍କା ପକେଟରୁ କାଢ଼ି ଶୁଅରକୁ ଦେଲେ—ଶୁଅର ଘୁଂଗା ଅଭିନୟ କର ଟଙ୍କା ନେଇ କସ୍ତୁରୀ ଯାଇଥିବା ଦଗର ବିପରୀତ ଦଗକୁ ହାତ ଦେଖାଇ ଦେଲା )

---

## ୩ୟ ଦୃଶ୍ୟ

(ଫ୍ରେଡରିକ୍‌ର ବୈଠକ ଖାନା—ବସିଛନ୍ତି କୃଷ୍ଣଚନ୍ଦ୍ର, କଣା ପଡ଼ୁଥାଏ ଯେପରି ସେ କାହାର ଅପେକ୍ଷାରେ ଅଛନ୍ତି )

ଚରଣ—( ପ୍ରବେଶ ) କୃଷ୍ଣ, କୃଷ୍ଣ, ହଜୁର କିଙ୍ଗ ଆରେଷ୍ଟ, ( king arrest ) ବକ୍‌ସି ଅରେଷ୍ଟ, ପାଇକ ମେଳି ୱାଟର ( Water ) ଏକଦମ୍ ୱାଟର ।

କୃଷ୍ଣଚନ୍ଦ୍ର—ତୁମି ଆବାର ସେଇ ବଣ୍ଡଇଂରେଜ କଥା ବଲଲେ ?

ଚରଣ – କୃଷ୍ଣ କୃଷ୍ଣ···ଅଜ୍ଞ ଉତ୍କଳ ସିନା ଜେବେ ନଟ୍ ରଂଗ ( not wrong ) ହୋଇ ପାରୁଛି କେଉଁଠି ?

କୃଷ୍ଣଚନ୍ଦ୍ର—ସେ ଗାଇଟ, ରଂଗ ( Right wrong ) ଥାଉ । ଦ୍ୱାଖୁନ ଭନ୍ ଭଗ୍ନିବ ? ସାହେବଙ୍କ ଅପାହେର ହାତର ଜେହେଉଏ ଗୁଲ୍‌ଗଲ—ଏତଟା ସିଧାଇ ପର୍ଯ୍ୟନ୍ତ ଏଖାନେ ନାଇଁ । ପାଇକ ଗୁଲ ଯେ ରୂପ ଧରେଚ, ଏ ଚୋଟଃରେ ଯତ ସେପଲ ତରେ ଭନ୍ ଭଗ୍ନିବ ?

ଚରଣ—କୃଷ୍ଣ କୃଷ୍ଣ—ହଜୁର ଉଦ୍ଧିକ ଆପଣ ନଟ୍ ଫିଅର ( not fear ) ଏଠିକି ଜେଲ୍ ହେଲେ ଅସିବେ ନାହିଁ । ଅଲ ଅଣ୍ଡରଷ୍ଟାଣ୍ଡ ( all understand ) ସାହେବ ଏଠି ନାହାନ୍ତି ।

କୃଷ୍ଣଚନ୍ଦ୍ର—ବକ୍‌ସି କ ଧରିବାର ଜନ୍ୟ କି ଭୂମି କ ବ୍ୟବସ୍ଥା କରେଛ ?

ଚରଣ—କୃଷ୍ଣ, କୃଷ୍ଣ, ହଜୁର ତାଙ୍କ ସେ ନଙ୍କ ମଧ୍ୟରୁ ଗୋଟାଏ ହାଣ୍ଡ ( hand ) କୁ ଅଣି ପାଇ ହାତକୁ ଅଣି—ତାକୁ

କଣ୍ଟୁ ସିଲଭ୍ରକଏନ୍ ( Silver coin ) କୁ ଲୋଭ ଦେଖାଇ ବକ୍‌ସିଙ୍କୁ ଗଙ୍ଗାବତାଠାରୁ କଲ୍ ( Call ) କରି ନେଇ ଆସିଲି, ଏଥର କଙ୍ଗ ( king ) ହେଲା ଏକେ । ତାଙ୍କୁ ଆରେଷ୍ଟ ( arrest ) କରିବାକୁ ବେଶୀ ଡେରି ଲାଗିବ ନାହିଁ । ତାପରେ ବକ୍‌ସି...

କୃଷ୍ଣଚନ୍ଦ୍ର—ତା'ର ପର ବକ୍‌ସି ! ତୁମି କେମ୍ପନେ କର ବକ୍‌ସିକେ ଧରତେ ଯାଚ୍ଚ ସହଜ । ହେବାର କେନ୍ ତୁମି ଚେଷ୍ଟା କରଥିଲ ନାହିଁ । କିନ୍ତୁ ସେଇ ଗ୍ରାମପୁରର ଲୋକଟା ବକ୍‌ସିଙ୍କୁ ଧରେ ଛାଡ଼ିଦିଲ ।

ଚରଣ—କୃଷ୍ଣ କୃଷ୍ଣ—ହଜୁର ଆପଣ ଅଣ୍ଡରଷ୍ଟାଣ୍ଡ ( understand ) କରି ପାରୁ ନାହାନ୍ତି ? ଲିବରିଙ୍ଗ ବକ୍‌ସିଙ୍କୁ କ୍ୟାଚ ( Catch ) କରି ଭାହିଁକି ହାଣ୍ଡ ( hand ) ରୁ ଆଉଟ ( out ) କରିଦେଲା—ମାନେ ହାତରୁ ଛାଡ଼ିଦେଲା ।

କୃଷ୍ଣଚନ୍ଦ୍ର—କ୍ୟାନ୍ ଛାଡ଼ିଦେଲ ?

ଚରଣ—ବକ୍‌ସି ସାଇଡ଼ ( Side ) ର ଗୋଟାଏ ମ୍ୟାନ (man) ମାନେ, ବକ୍‌ସି ଦଳର ଗୋଟାଏ ଲୋକ ସେଇଠି ଆସି ପହଞ୍ଚିଗଲା । କୃଷ୍ଣ କୃଷ୍ଣ—ମୁଁ କି ସହଜରେ ଛାଡ଼ୁଛି ! ଏନି ରୋଡ଼ ( any road ) ରେ ମାନେ ଯୋଉ ବାଟରେ ହେଲେ ମୁଁ ତାଙ୍କୁ ଧରିବି ।

କୃଷ୍ଣଚନ୍ଦ୍ର—ତୁମି ଚରଣ ଯତଟା କାଜ ନା କର ଡତଟା କଥା ବଲ । ଆମି ଦେଖଥିଲ ବକ୍‌ସିକେ ଭଗିବା କରିବ, ଭଗିବା ବଲ । ଏଖୁନି ରେଡ଼ଙ୍ଗର ଜମିଦାର ଆମି—ଏତଦିନ ତୁମାର କଲେକ୍‌ଟରହବ ବୁଝିଲ ?

ଚରଣ—କୃଷ୍ଣ କୃଷ୍ଣ, ତା'ହେଲେ ମୁଁ ହଜୁରଙ୍କର ଦେବାନ୍ ହେବ ମାନେ ଏକଦମ୍ ରାଇଟ୍ ହ୍ୟାଣ୍ଡ ( Right hand )

କୃଷ୍ଣଚନ୍ଦ୍ର—ତୁମି ଗ୍ରାମ ପଟ୍ଟନାୟକର ବ୍ୟାଟା ଚରଣ ପଟ୍ଟନାୟକ ତୁମି ଠିକ୍ ଅଛ ।

ଚରଣ—ହଜୁର, ସାହେବଙ୍କୁ ବହୁ ମତେ ଅଜ କଣ୍ଟୁ ଲ୍ୟାଣ୍ଡ ( Land ), ମାନେ ଜମି ବାଡ଼ିର ବଂଦୋବସ୍ତ କରି ଦଅନ୍ତୁ ।

କୃଷ୍ଣଚନ୍ଦ୍ର—ହବେ, ନିଶ୍ଚୟ ହବେ—ଅଗେ ଯୁଦ୍ଧଟା ସମ୍ପୂର୍ଣ୍ଣରୂପେ ବନ୍ଦ ହୟେ ଯାକ ।

ଚରଣ—କୃଷ୍ଣ କୃଷ୍ଣ—ଅଜ୍ଞା ଏଥରକ ଯୁଦ୍ଧ ପୁରା ବନ୍ଦ, ଫୁଲ୍ ଏଣ୍ଡ ( Full End )

କୃଷ୍ଣଚନ୍ଦ୍ର—ଅନେକ ନାଁ ନାଁ ଅଗେ ବକ୍ସି ଅରେଷ୍ଟ ( arrest ) ହଇଯାକ ତାର ପର···ବୁଝଲେ

ଚରଣ—କୃଷ୍ଣ କୃଷ୍ଣ—ଅଜ୍ଞା ବକ୍ସିବଣା—ବକ୍ସିର ଫାଦର ( Father ) ବି ଅରେଷ୍ଟ ( arrest ) ହୋଇଯିବ । ଯେଉଁ ଜାଲ୍ ପକାଇଛୁ ଏକଦମ ହେଡ୍‌ରାଉଣ୍ଡ ନେଟ୍ ( Head round net ) ମାନେ ମୁଣ୍ଡ ଭଉଁରୀ ଜାଲ··· ସେଥିରେ ନସ ନପଡ଼ ଯୁ ଅଛୁ ।

କୃଷ୍ଣଚନ୍ଦ୍ର—ଥାକ୍, ଅହ ବାହାଦୁରୀ ଦେଖାବାର ଦରକାର୍ ନେଇ—

ଚରଣ—କୃଷ୍ଣ କୃଷ୍ଣ—ଜଣ ଜନୁଛନ୍ତି ହଜୁର—ଚରଣ ଯେମିତ ଫାଦର ( father ) ର ସନ୍ ( Son ) ବୋଲି ଲାଇଫ ( life ) କୁ ଓ୍ୱାଟର ( water ) ଛାଡ଼ିଛନ୍ତି ମାନେ ଜୀବନକୁ ପାଣି ଛାଡ଼ିଦେଇ କାମ କରୁଛି । କୃଷ୍ଣ କୃଷ୍ଣ—ସେ କଥା ଥିଙ୍କ୍ ( think ) କଲ ବେଳକୁ ହେଅର ( hair ) ଷ୍ଟାଣ୍ଡ

( stand ) କରି ଯାଉଛନ୍ତି—ମାନେ ଠେମଷ୍ଟାଂକୁ ର ଜନ୍ମନ୍ତି ।

କୃଷ୍ଣଚନ୍ଦ୍ର—ଅଚ୍ଛା ଅଚ୍ଛା ହାକମ ଅସେ ଯାକ୍ ତୁମକୁ ଅଜ ବହୁ ଜମିବାଡ଼ି କରିଦେବ ଧବ…

ଚରଣ—( ପାଦଧୂଳି ନେଇ ) ହଜୁରଙ୍କ ଦୟା ( ଘଣି ଅପିଲେ ଘନ—ହାତରେ ଜଳନ୍ତା ମଶାଲ ଅଭ ବର୍ଚ୍ଛା । )

ଘନ—ହଜୁର—ଅମ ପ୍ରତି ଦୟା ହଉ । ପ୍ରସାଦ ବାଣ୍ଟିଲା ଭଳି ଯେତେବେଳେ ଜମିବାଡ଼ି ଗୁଡ଼ାକ ଦେଇ ଦେଉଛନ୍ତି, ଅମ ଭାଗ୍ୟରେ କିଛି ପଡ଼ୁ—।

କୃଷ୍ଣଚନ୍ଦ୍ର—( ଭୟଭୀତ ହୋଇ ଅଥଚ ବାହାରେ ଦୃଢ଼ତା ଦେଖାଇ ) ଦେଖୁଛ ଚରଣ—ଏ ବନ୍ ମାନୁଷ ଅମାକେ ପରିହାସ କରି କଥା ବଲେ—ସମୟୁଷ୍ଟା ଯ୍ୟାକ୍ତୁ ଜାନ୍ତ, ନା ହଲେ—ଏ ଲୋକଟାକେ, ଯ୍ରଜଏ ଲଲ କରେଦତମ୍—ଲୁଲୁରେର ଅସ୍ପର୍ଦ୍ଧା କମ ନୟ • ଅରେ କେ ତୁମି… ଏଖାନେ ତୋମାର କାଜ କି ?

ଚରଣ—କୃଷ୍ଣ କୃଷ୍ଣ—ଘନଶ୍ୟାମ ବଲଅର ଛି—ତତେ କଣ ମାଲୁମ ପଡ଼ୁ ନାହିଁ ତୁ କାହା ଅଗରେ ଠିଅ ହୋଇ କଣ ଟକ୍ ( Talk ) କରି ଯାଉଛୁ ?

ଘନ—ତହସିଲଦାର, ଜୁଅରୋଗ୍ୟ କର ମୁଁ ତ ଅଜ ଶହ ଶହ ବାଟି ଜାଗିର ପାଇ ନାହିଁ ଯେ ଡର ଡର କଥା କହିବି । ମୋର ଦେଢ଼ ଏକୁ ଯାଉଛି । ତେବେ କଣ ତହସିଲଦାର ପାଗ ଭିଡ଼ା ଅଗରୁ ବି ଟିକିଏ ଭଲ କରି ଜାଲି ଜାଣେ ।

କୃଷ୍ଣଚନ୍ଦ୍ର—ଚରଣ ଅମି ବଲଛି ଏ ଲୋକଟାକେ ମାର

ସନ—ସୈନ୍ଧବଙ୍କର ଜମିଦାର ସାହେବ ମଲକୁ ଅଜ୍ଞ ମାରିବ କଣ

( ପାଟିକରି ଡାକିବା )

କୁହୁଣା, ପଦନ, ଢଣ୍ଟରଢବାଙ୍କେ, ରତନୁ, ସୁଅରେ ଅସ ଅସ
ଦଣ୍ଟା ଯାକ ନାମଡହରାସ ଏଇଠି ଅଛନ୍ତି ।

( ସମସ୍ତେ ପଶି ଆସିଲେ ହାତରେ ଅସ୍ତ୍ର ଶସ୍ତ୍ର )

ଚରଣ—କୃଷ୍ଣ କୃଷ୍ଣ...ଇହା ଅମକୁ ବିଟ୍ (Beat) କରିବ ନାଁ
କଣ ? ଏମତି ଗୁରୁ ଅଜ ଗ୍ରାଜଣ୍ଡ round କରି ଯାଉଛ
କଥା କଣ ?

ପଦନ—( କମେ କମେ ସମସ୍ତେ ସେ ଦୁହିଙ୍କୁ ଘେରିରେ ରଖି )
କଥା କଣ ? ଜାଣିନୁଁ ତୋର କଥା ?

ଚରଣ—କଣ ହାକିମଙ୍କ ପାଖରେ ଗୁହାରି କରିବାକୁ ଅସିଛ... ?
ଅଦର ଟାଇମ୍ (Other time) ରେ ଆସିବ । ହଜୁର
ବୋଠିରେ ନାହାନ୍ତି ......

କୁହୁଣା—ବୁଝିଲୁ ତହସିଲଦାର ତୋ ବୋପା ଫିଟର ସାହେବ
ଖୁବ୍ କପାଳଅ—ତା ମା କୁଟଅ ପୂଜିଥିଲ ନଇଲେ
ଜାଣିଥାନ୍ତା ପାଇକ ତୁଅଙ୍କର କିମ୍ମତ କଣ ?

ଚରଣ—କୃଷ୍ଣ କୃଷ୍ଣ—ବୁଯାସିନୁ 'ରାଜ୍ଞାମପଣ......'ହୁ' 'ତା'
'ରେ' 'ରି' ଲଗାଇ କଣ ଟକ୍ (Talk) କରୁଛୁ ।

ପଦନ—ଓଃ ଅପମାନ ହୋଇଗଲ ସବୁ ସେ ବୃଙ୍କା ସାଠ ଗ୍ଣଡ଼େ
ତହସିଲଦାର ଯାହା ପଗୁରୁଛି ସିଧା ସଳଖ କଥା କହ
ମହାରଜାଙ୍କ ସିଲ୍ ମୋହର କେଉଁଠୁ ପାଇଲୁ ।

ଚରଣ—କୃଷ୍ଣ କୃଷ୍ଣ ( ହସି—ଦେବାନ ପ୍ରତି ) ଶୁଣୁଛନ୍ତି ହଜୁର ।
ମୁଁ କଂପାଣୀରେ ସରଭିସ (Service) କରୁଛି ମୋ ପାଖରେ

ପୂର୍ଣ୍ଣ ମହାରାଜାଙ୍କର ସିଲ ମୋହର ! ସତ୍ୟବାବୁ ତମର ତୋ.
ହେଡ଼ (head) ବୋଧେ ଖରାପ ହୋଇଛି । ଭଠ ଭଠ
ରୋଡ଼ (road) ଧର ·····ଗୃହକୁ ହଜୁର ଫେରନ୍ତୁ—

ହଃବାବୁ—( ତରଣକୁ ଗଳାଠକ୍କା ଦେଇ ) ଏସି ଧଳାଙ୍କୁ ଭୁଅଟେ ପୂର୍ଣ୍ଣାହୁତି ହୋଇ ଯାଉ ତା'ପରେ ଯାଇଁ ଯୋଉ କଥା ।

ପଦନ—ସୁଅରେ, ବାହାରେ ଯୋଉ ଶଠିଆ ଧରଥିଲ କଣ କଲ ?

କୃତ୍ତିଚନ୍ଦ୍ର—ଅରେ ବାବା—ସେ ସବୁ ବ୍ୟାପାର ଏଠାରେ କାହିଁକି ? ଯାଅ ବାହାରେ ଯାଅ । ପାଞ୍ଚଦଶଟା ସିପାହୀ ନା ଗୁଣି ଆମି ଯେ କ ଭ୍ରଷ୍ଟ କରଛି······

ସୁଅର—ଦେଖୁଛ ପଦନ ଏ ଛଟି ଗୋଳମାଳ ଭିତରେ ବା ଦେବାନ ସାହେବ ଅଛନ୍ତି । ମୁଁ କହୁନାହିଁ ତୁମଙ୍କୁ ଅଗରୁ ଏ ଯେ ଏକାଠକାଳେକେ ଯୋଟାଏ ଇସ୍ତ ଚଳାନ୍ତି ।

ହଃବାବୁ—ସୁଅରେ ସେ କଥା ଥାଉ କେତେ ସାଙ୍ଗରେ······ ଭଅ ଯାତ୍ରା କରିବାର କଥା କହଦଅ ।

ସୁଅର—ଏ ଜମଦହଙ୍ଗମ ଭଟାକୁ ବାନ୍ଧି ନେଇ ଗ୍ଭଲ······ବଡ଼ସି ସାଅନ୍ତେ ଆସିଲେ ଯାହା ବିଗ୍ଭର କରିବେ ସେଇଆ ହେବ ।

ଘନ—ସେ ସବୁ କଥା ହେବ ନାହିଁ··· । ବଡ଼ସି ସାଅନ୍ତେ ଆସିବେ ଯାହିଁ ସ୍ୱାଙ୍କର ବିଗ୍ଭର ହେବ ?

ଭୁବନସା—କାହିଁକି, ପାବକ ପୃଅର ଖଣ୍ଡା କଣ ଶୋଇ ପଡ଼ିଲାଣିକି ?

ସବନ—ହାଣିଦେଲେ ଏକା ଥରକେ ମରିଯିବେ । ଅମଙ୍କୁ ଯେତେ ହନ୍ତ ସନ୍ତ କରଛନ୍ତି ସେମାନେ ସେଇକି ହେବା କରକାର ।

କୃଷ୍ଣଚନ୍ଦ୍ର—( ଅନ୍ୟମନସ୍କ ଭାବରେ ) ଆମାକେ ଛେଡ଼େ ଦାଓ ଅମି ଦୁଃଖଙ୍କ ଦର ଚଳୁଛି ଗୃହବାସ ଆର ଜମିଦାରି ସବ ଛେଡ଼େ ଯୋଗୀ ହଇବ ଚଲେ ଯାବ......

ତରଣୀ—କୃଷ୍ଣ କୃଷ୍ଣ ମୋ ଜୀବନଟା ଶେଷହେଉ......ମୁଁ ତୁମ ସଂଗରେ ମିଳିଯିବି ..ଅଉ ଫିରିଙ୍ଗି ଘେଟରେ ରହିବି ନାହିଁ ।

ଜଃଭଚାଟ—ଆମ ଦେଶର ଭାଗ୍ୟଟାତ ଜଳଜଳ ହୋଇ ଦିଶୁଛି— ଅଜ ତେଣା ଜୀବନଟା ରଖି ଦେବୁ ?

ସଦନ—ଦେଶ ଯାବଙ୍କୁ ବାନ୍ଧି ଏ ଘରେ ନିଆଁ ଲଗାଇ ଦଡା ସ୍ବଲ ।

( ସଂଗେ ସଙ୍ଗେ ପାଇକମାନେ ସେଇଆ କହି...ଆନନ୍ଦରେ ଚିତ୍କାର କରି ଉଠିଲେ )

---

## ୪ର୍ଥ ଦୃଶ୍ୟ

( ଏକ ସୁବିସ୍ତୀର୍ଣ୍ଣ ପ୍ରାନ୍ତରରେ ପାଇକମାନେ ଢାଲ ତରବାରୀ ଫକ୍ତ ଧରି ପାଇକ ନାଚ ନାଚିବାରେ ବ୍ୟସ୍ତ ଥାଆନ୍ତି ପାଇକ ନାଚର ଗୀତରେ ଚାରିଆଡ଼ ଝଙ୍କାରିତ ହୋଇ ଉଠୁଥାଏ)—"ଅଦ୍ୟ କର୍ଣ୍ଣାଟକଣ୍ଡ, ଗଡ଼ ଶିବ ସଡ଼ି ସ୍ବର ଦିଗପାଳ ଗଜନ୍ତିଙ୍କ ଜୁହାର, ଆଦ୍ୟରେ ଅଧିପତି, ନୃସିଂହ ଚକ୍ରବର୍ତ୍ତୀ, ଝାଡ଼ଖଣ୍ଡ ବାଦଶା, ମଦ୍ରମଣ୍ଡ ଗଜସିଂହ, ଘଣ୍ଟୀରେ ଦଣ୍ଡିବ ଶତ୍ରୁକୁ ଜିଣିବ, ଭଗାଗ ମୁଣ୍ଡକୁ କୁଟେଇ ହାଣିବ, ଚାଟିବ ଜଚ୍ଚା ତାନ, ଚର୍ଣ୍ଣପାଦୁଣ୍ଡରୁ ଜୁହାର ରହିଲା ଦରବାର ଦରଶନ ।

ଫିକ୍ ମଣ୍ଡ ଠାଣି, ଭାବର ଗୃହାଣି, ଯେଉଁ ସର୍ପ ପ୍ରାପ୍ତ ଗତ
ସାର୍ବଭ ଭେଳକ ଲଗଭ ଗୃହିଁଲ, ଯୁଗ ଗୁରୁଙ୍କର ଭୂଷି,
ହାଃ ହାଃ ରେ ରେ ପାଇଲ, ସ୍ୱର୍ଗରେ ଇନ୍ଦ୍ର ମଞ୍ଚରେ
ନରେନ୍ଦ୍ର ଯାହାଙ୍କର ଖିଡ଼କଦାର ପାଗ, ଶର୍କୁନ ରହେ ଅବ
ବଗଲ ପାଇ ତାଲ ଟବବର, ଲକ୍ଷେ ପୋଷି ମହାରାଜା,
ଜହାର ଜହାର ହେ ମହିମା ।”

ବକ୍ସି—(ହଠାତ୍ ପଶି ଆସି) ବର୍ବର, ବର୍ବର, ଏ ସର୍ବନାଶ ଲଗ୍ନରେ ନିଜର କ୍ଷୁଦ୍ରତମ ସ୍ୱାର୍ଥରେ ଅନ୍ଧ ହୋଇ ଆନନ୍ଦ କରୁଛ ଉତ୍ସବ କରୁଛ ?

ମଦନ—ସାହେବ ! ଆପଣ ହଠାତ୍ ଏଠି ?

ବକ୍ସି—ତୁମ୍ଭମାନଙ୍କୁ ଶେଷକଥା ପଦେ କହିବାକୁ ? ଯୁଗ ଯୁଗ ଧରି ଏ ଦେଶର ଯେଉଁ ନିଂଦା ଥିଲା, ଏ ପାଇକ ମେଳ ମଧ୍ୟ ସେଥିରୁ ବାଦ ଗଲା ନାହିଁ ।

ଘନ—ଆମ୍ଭମାନଙ୍କୁ ସାଫ ସାଫ କହୁନାହାନ୍ତି ସାଆନ୍ତେ କଣ ହୋଇଛି ?

ବକ୍ସି—ସର୍ବନାଶ ହୋଇଛି—ଏ ସୁନାର ଭୂଇଁରେ ଯେଉଁବେଳେ ଜଳି ଆସୁଥିଲା ସ୍ୱାଧୀନତାର ପ୍ରଥମ ସୂର୍ଯ୍ୟ, ତାକୁ ଏଇ ଦେଶର ସନ୍ତାନ, ଶିଖ ମନାଇବା ଦଳ ପୁଣି ଥରେ ରାହୁ ଗ୍ରାସ କରାଇ ଦେଲେ, ଦେଖିପାରୁନ ତୁମ୍ଭେମାନେ ଆଖି ଖୋଲି ଆହେ କଳଙ୍କର ଅଂଧକାର, ପରାଜୟର ଅଭିନାଦ ।

ସମସ୍ତେ—ବକ୍ସି ସାହେବ, ଆମେ କିଛି ବୁଝି ପାରୁନାହୁଁ ।

ବକ୍ସି—କଣ ବୁଝିବ ତୁମ୍ଭେମାନେ ? କଣ ବା ଜାଣିବ—ତୁମର ପାଦର ତଳରେ ଯେଉଁବେଳେ ଦେଖା ଦେଇଛି ବିଶ୍ୱାସଘାତକତାର ଛାଇ—ତୁମର ଦେଶ ମାଟିରେ

ଯେତେବେଳେ ଜଲ୍ଲାଦ୍ ଚଉଛନ୍ତି ଲକ୍ଷ ଲକ୍ଷ ଦେଶ ଦ୍ରୋହୀର ଦଳ—ସେତେବେଳେ ତୁମ୍ଭେମାନେ କଣ ଆଶା କରୁଥାଅ ?

ସମସ୍ତେ—ବକ୍ସି ସାନ୍ତେ !

ବକ୍ସି—( ବଦ୍ଧ ସ୍ୱରେ ) ବକ୍ସି ସାନ୍ତେ ! କଏ ତୁମର ବକ୍ସି ସାନ୍ତେ ! ତୁମ ବକ୍ସିର ମରଯାଇଥିଲା । ତୁମେମାନେ ଅତ୍ୟାଚାରର ଲୁଣ୍ଠିତ ସର୍ବସ୍ୱର ଦଳ ବାନ୍ଧିକ, ବାନ୍ଧିକ ତା ମନରେ ଆଣିଦେଇ ଚେତନା; ଆଜ ଆଜ ବାନ୍ଧିକ ମୂର୍ଦ୍ଧିରେ ତାର ବୋଳଦେବାକୁ ଚେଷ୍ଟା କରୁଛ କଳଙ୍କର କାଳିମା ( ସମସ୍ତେ ମୁଣ୍ଡ ତଳକୁ ପୋତିଲେ ) କୁହ ଆଜ ତୁମ୍ଭମାନଙ୍କର ସେନାପତି ବକ୍ସି ଜଗବନ୍ଧୁ ତୁମ୍ଭମାନଙ୍କୁ ପ୍ରଶ୍ନ କରୁଛି ଗଜପତିଙ୍କର ବନ୍ଦୀ ପାଇଁ ଦାୟୀ କଏ ?

ସମସ୍ତେ—ଗଜପତି ବନ୍ଦୀ ?

ବକ୍ସି—ହଁ ହଁ ଗଜପତି ତୁମର ବନ୍ଦୀ—ସାଇବ ବନ୍ଦୋବସ୍ତର ଯେଉଁ ନେତ୍ରଦ୍ୱୟ ବୋଧହୁଏ ସେଥିପାଇଁ ଦାୟୀ କଏ ?

ସନ—ଅଜ୍ଞା ସେଇ ଚରଣ ପଟ୍ଟନାୟକ !

କୁହୁଣା—ଅଜ୍ଞା ଦେବାନ କୃଷ୍ଣଚନ୍ଦ୍ର ।

ବକ୍ସି—କେବଳ ଚରଣ ନୁହେଁ, କି କୃଷ୍ଣଚନ୍ଦ୍ର ନୁହେଁ, ତୁମ୍ଭେମାନେ ମଧ୍ୟ । ତୁମ୍ଭମାନଙ୍କ ମଧ୍ୟରେ କଳଙ୍କର ସୃଷ୍ଟି ପଶିଲାଣି ତା ନ ହୋଇଥିଲେ ଚରଣର ଶକ୍ତି ବାନ୍ଧି ବକ୍ସିର ପାଇକକୁ ଲକ୍ଷ କରଇ ଭାମ ହାସଲ କରନେବ ।

ପଦ୍ମନ—ସାନ୍ତେ—ଆମେ ଚରଣ ଆଜ କୃଷ୍ଣଚନ୍ଦ୍ରକୁ ନଅଁରେ ଯୋଡ଼ି ଦେଉଛୁ—

ଜଃ ଚବାଂଟ—ମାଲ୍ ସେଇଭଳି ନୁହେଁ ସାନ୍ତେ ଫ୍ଲେଚର ସାହେବ ଚୌଠିଟାକୁ ପଥ ସୋଝ ଦେଉଛୁ ।

ବକ୍ସି—ତା ପୂର୍ବରୁ ଯେ ତୁମ୍ଭମାନେ ନିସାଡ଼ା ଘରଖାର ହୋଇଯାଇଛ । ଶରଧନ ପାଇଁ ଯେ ଖୋର୍ଦ୍ଧା ଭୂଇଁର ଭାଗ୍ୟ ମୀମାଂସା ହୋଇ ଯାଇଛି—ଅସ୍ ବନ୍ଦୋବସ୍ତର ଯେଉଁ ସୌଧ ଗଢ଼ା ହୋଇଥିଲା ତାର ପ୍ରତ୍ୟେକ ପ୍ରସ୍ତର ଗଜପତିଙ୍କର ବନ୍ଦୀ ଶିବିର ଶୂନ୍ୟ ଭୂମି ପଡ଼ିବାକୁ ଲାଗିଲାଣି ଚୂରମାର ଆଜି ପରାଜୟ । ତୁମ୍ଭେମାନେ ଦେଖି ପାରୁନ—ମୁଁ କିନ୍ତୁ ଦେଖି ପାରୁଛି । ଆଃ ଠିଆ ହୋଇ ରହିଛ କଣ—ଯାଅ ଚାଲିଯାଅ ବକ୍ସିଙ୍କୁ ଟିକିଏ ଶାନ୍ତିରେ ରହିବାକୁ ଦିଅ ଯାଅ—( ଗୋଟି ଗୋଟି ହୋଇ ସମସ୍ତେ ଯିବାକୁ ଲାଗିଲେ—ଏତିକି ବେଳେ ପଶି ଆସିଲେ କରୁଣାକର ସର୍ଦ୍ଦାର )

କରୁଣା—ତୁ ଏଠି ଚାନ୍ଦିକରେ ବକ୍ସି ! ଚାଲ ଉଠ ଚାଲ ! ଫିରିଙ୍ଗି ମାଡ଼ ଆସୁଛନ୍ତି ଦଣ୍ଡପାଟଣର—ଚାଲ ପଳେଇ ଯିବା

ବକ୍ସି—ପଳେଇ ଯିବ ? ( ହସିଲେ )

କରୁଣା—ତାଙ୍କୁ ଜାଣି ହେବ ନାହିଁରେ । ଆସ ପାଇକ—ହାତରେ ବାଣି ବନ୍ଧୁକ ଏଇ ଦେଇଥା—ସେମାନେ ଶହ ଶହ ନୁହଁନ୍ତି ହଜାର ହଜାର—ତା ସାଂଗକୁ ତୋପ ଅଛି—କମାଣ ଅଛି—

ବକ୍ସି—କରୁଣାକର ? ତୁମେ ଯାଅ ବକ୍ସିଙ୍କୁ ଏକୁଟିଆ ଛାଡ଼ିଦିଅ

କରୁଣା—କଣ କହୁଚୁ ତୁ ବକ୍ସି...ତତେ ଛାଡ଼ି ଦେଇ ଯିବି, ଫିରିଙ୍ଗି ହାତରେ । ନାଁ ହବନାହିଁ, ଆସ ଜୀବନରେ ଅଛୁ କଣ ? ତୁ ସବୁ କହିଲୁ ଖୋର୍ଦ୍ଧା ମୂଲକର ବକ୍ସି, ତୁ ଜୀ...ଥିଲେ ଏଥର ନ ହେଲେ ଆଉ ଥରେ ଲଢ଼େଇ ହେବ—ଚାଲ—ମୋ କଥା ମାନ—

ବକ୍ସି—ଅନ୍ଧାରେ—ଆଉ ଥରେ ଲଢ଼େଇ ହେବ ( ବିଦ୍ରୂପ ହସ )

କରୁଣ—ଏରେ ହସୁଚୁ କାହିଁ ? ଖୁବ ଖାଇବର ସର୍ଦ୍ଦାର ତୋ ଚୋଡ଼ ଚଲୁଛୁ—ଉଠେ ଜୁହାର ହଜୁର—ଆ—ମୋ ସାଂଗେ ଚାଲିଆ—

( ବକ୍ସିର ହାତରୁ ଛୁରୀ ନେଇ ବାହାରି ଗଲେ )

---

## ଷଷ୍ଠ ଦୃଶ୍ୟ

( ବନ୍ଦୀଶାଳା, ଭାଂଗାଳସାର ରାଜା ଓ ରାଣୀ—ଭିତରେ ଚାର ପଡ଼ଚନ୍ଦ୍ର ଅବହାନ୍ତ ସ୍ୱରରେ, ସେମାନଙ୍କର ଉତ୍କ୍ଷିପ୍ତ ବନ୍ଦୀଶାଳାର ଚତୁର୍ଦ୍ଦିଗରେ ସୃଷ୍ଟି କରନ୍ତି ଏକ କରୁଣ ଆର୍ତ୍ତନାଦ )

ମୁକୁନ୍ଦ—ରାଣୀ ସବୁ ଶେଷ ହୋଇଗଲା—ଖୋର୍ଦ୍ଧା ଭୂଇଁର ଭାଗ୍ୟରେ ବହିଗଲା ଘୋର ଅନ୍ଧକାର । କିନ୍ତୁ ରାଣୀ—ଉତ୍କଳର ଗଜପତି ମହାରାଜା ମୁକୁନ୍ଦଦେବ ହେଲେ ବି—ଚେଷ୍ଟାରେ ତ୍ରୁଟି କରି ନାହିଁ । କିନ୍ତୁ ଉତ୍କଳର ଇତିହାସ ପୃଷ୍ଠାରେ ମହାରାଜା ମୁକୁନ୍ଦଦେବ ଶେଷ ମହାରାଜା ହୋଇ ରହିଗଲେ ।

ରାଣୀ—ବେଶୀ କଥା କହନ୍ତୁ ନାହିଁ ସ୍ୱାମୀ ?

ମୁକୁନ୍ଦ—ନା ପାରୁନାହିଁ ବଡ଼ ଅବଶ ଲାଗୁଛି ଯେ ଜାତିର ଭାଗ୍ୟ ଗ୍ରହଣ ହୋଇଛି ମୁକୁନ୍ଦଦେବଙ୍କ ଖାଦ୍ୟ—ତା ଉପରେ ପୁଣି ଘୋଡ଼ା ଗୃହ ଚାର ପ୍ରହାର—ନା ଆଉ ବେଶୀ ଦିନ ନୁହେଁ—ଛାତିରେ ବଡ଼ ଚୋଟରେ ଯନ୍ତ୍ରଣା ଆଉ ପାରୁ ନାହିଁ । ବଡ଼ ଶୋଷ ଲାଗି ଟୋପାଏ ପାଣି—

ରାଣୀ—( ପାଣି ଆଣିବାକୁ ଗଲେ ମାତ୍ର ପାଣି ନପାଇ ଫେରି ଆସିଲେ ) ପ୍ରଭୁ ।

ମୁକୁନ୍ଦ—କଣ ?—ପାଣି ନାହିଁ ? ଦେଖୁଛ ଦେଖୁଛ ରାଣି କି ନିର୍ମମ ଏମାନେ—କଳସୀ ରହିଛି କିନ୍ତୁ ପାଣି ନାହିଁ ?

ରାଣୀ—ପ୍ରଭୁ ! ଆଜ କେତେଦିନ ଏ ଅତ୍ୟାଚାର ଚାଲିବ ?

ମୁକୁନ୍ଦ—ମୋ କଥା ଶୁଣୁଛ ରାଣି—ତୁମେ ବଡ଼ ସ୍ୱାର୍ଥପର—। ତୁମ ଉପରେତ କପ ପ୍ରକାର ହୋଇ ନାହିଁ । ନାରୀ ଉପରେ ବନ୍ଦୀଶାଳାରେ ଯେଉଁଠି ଅତ୍ୟାଚାର ହୁଏ…ମୁଁ ଯେବେ ଶୁଣି ନ ଥିଲି ରାଣି ।

ରାଣୀ—ଏ ଶାସନରେ ସବୁ ସମ୍ଭବ—ଦେଖୁନାହାନ୍ତି ପ୍ରଭୁ ଯେଉଁ ବରୁଣେଇ ଗଡ଼ ଦିନେ ଆପଣଙ୍କ ପୂର୍ବପୁରୁଷଙ୍କର ରାଜଧାନୀ ଥିଲା ସେଇ ବରୁଣେଇ ଗଡ଼ ଫିରିଙ୍ଗି ରାଜତ୍ୱରେ ଆଜ ବନ୍ଦୀଶାଳାରେ ପରିଣତ ହୋଇଅଛି ।

ମୁକୁନ୍ଦ—କି କୁକ୍ଷଣରେ ଏ ଷଡ଼ଯନ୍ତ୍ର ହୋଇଥିଲା କେଜାଣି…

ସୈନ୍ୟ—( ପ୍ରବେଶ ) ହେ ଭୂପ କର, ଭାଷେଲୁ ବଡ଼ ବଡ଼ କଥା ହେ ! ଆଜ ପାଣିର ଦରକାର ଅଛି ?

ରାଣୀ—ତୁମ ପାଦତଳେ ପଡ଼ୁଛି ସୈନିକ ପ୍ରଭୁଙ୍କୁ ଆଜ ପ୍ରହାର କରନାହିଁ । ପ୍ରଭୁ ନଖାଇ ନପିଇ ଦୁର୍ବଳ ହୋଇ ଗଲେଣି ।

ସୈନ୍ୟ—ହେ ରାଜା—ଚଲେ—ସାହେବ ଟେଟେ ଡାକିଲା—

ମୁକୁନ୍ଦ—କାହିଁକି ସୈନିକ ?

ସୈନ୍ୟ—ତୁମ କଟକ ଜେଲକୁ ଯାଏ ଗା ତୁମ ଇଧର ରହେନେ ସେ ବଡ଼ି ଗୋଲମାଲ୍ କରେଗା

ରାଜା—ରାଣି ଲୁଅ ଝରେଇ କାତର—ଝରେଇ ଚାର ଲୁଅକୁ ଏଠି କେଉଁଠି କରେ ବନ୍ଦିର ଡରରେ ମୁକୁନ୍ଦଦେବଙ୍କୁ ଏମାନେ ସେମିତ କରୁଛନ୍ତି ।

ସୈନ୍ୟ—ହେ—ବନ୍ଦ କରୋ କ୍ୟା ଗଡ଼ବଡ଼ ବାତ ବୋଲତା ହେ ଚଲେ ?

ମୁକୁନ୍ଦ—ସୈନିକ ଆଜ ଯାଉଁଛ ? ଜୀବନର ବାକି କେଇଟା ଦିନ ଏଇଠି କଟାଇବାକୁ ମନେ ଗଣ୍ଠିଦିଅ—ତୁମେ ଯାଅ

ସୈନ୍ୟ—ନାହିଁ ଓ.ବାତ ନାହିଁ ହୋଏଗା ତୁମ ଜଲଦି ଯାଇଁ ବୋଲ ଚଲେ ?

ମୁକୁନ୍ଦ—ଶେଷ ଦିନରେ ପୁଣି ତୁମର ହାକିମଙ୍କୁ ମୁଁ ଅନୁରୋଧ କରିବି । ନାଁ ଚାଲ—ଆସ ଭାଇ ( ରାଜା ବନ୍ଧୁ କଣ୍ଠରେ ସୈନ୍ୟର ଅନୁଗମନ କଲେ )

—*—

## ୬ଷ୍ଠ ଦୃଶ୍ୟ

( ବସ୍ତ୍ରା ଉପରେ ବୁଲିଚନ୍ତି ମଦନ ଓ ସାବିତ୍ରୀ···ମଦନ ଅଂଧ ସାବିତ୍ରୀ ହାତ ଧରି ବାଟ କଢ଼ାଇ ନେଉଛନ୍ତି )

ମଦନ—( ହଠାତ୍ କରି ପଡ଼ିଗଲା ) ଏମିତ ଦାଦାଙ୍କ କଥା ଅପେକ୍ଷା ମନ ଯାଇଥିଲେ ଭଲ ହୋଇଥାନ୍ତା ସାବି !

ସାବିତ୍ରୀ—ତୁ ତୁଣ୍ଡରେ ଏକଥା କହୁଛ । ମୁଁ ହିଁ ଅଲକ୍ଷଣୀ ଶେଷକୁ ମୋର ଭାଗ ହୋଇ ଆସି ତୁଇଟା ଫୁଟେଇ ଦେଲି ଜାଣି ମୁହଁକୁ ଠେଲି ଦେଇ ତୁମକୁ ।

ମଦନ—ନିଜ ଦୋଷ ଦେଉଛ କାହିଁକି ସାବି । ଭାଗ୍ୟ ଦୋଷ—ଭାଗ୍ୟ ଦୋଷ । ନହେଲେ ଏତେ ବଡ଼ ମେଳାଟା ନଈମାଝେ ପାଣି ଫାଟି ଯାଇ ନ ଥାନ୍ତା ।

ସାବିତ୍ରୀ—ତଥାପି ସାଆନ୍ତଙ୍କର କଣ୍ଠ-ହଲା ।

ମଦନ—ସାରା ଖୋର୍ଦ୍ଧା ଭୂଇଁ ଅଞ୍ଚଳ ସେଇଆ ନସ୍ତ କ୍ଷୁଣ୍ଣ ବକ୍ସି ସାଆନ୍ତଙ୍କର କଣ ହେଲା ? କଏ କହୁଛି ଫିରିଙ୍ଗି ବକ୍ସି ସାଆନ୍ତଙ୍କୁ ଧରି ନେଇ ଜେଲରେ ରଖିଛି—କିଏ କହୁଛି ସାଆନ୍ତଙ୍କ ପାର ହେଲଣି—ଉଏ କହୁଛି ମାନ୍ଦାରକଣ୍ଠ ଦଳେ ଫିରିଙ୍ଗି ଫଉଜ ଆସି ବଣଜଙ୍ଗଲରେ ବକ୍ସି ସାଆନ୍ତଙ୍କୁ ଖୋଜୁଛନ୍ତି ।

ସାବିତ୍ରୀ—ତମେ ବେଶୀ କଥା କୁହନାହିଁ ବାଧୁଥିବ—ଏଇ ଅରମା ବାଟ—ନଖାଇ ନପିଇ ଚାଲିଛ—ଦେହରେ ପୀଡ଼ା ?

ମଦନ—ପୀଡ଼ା ବୋଲି କହୁଚୁ ନାହିଁ କାହିଁକି ଶେଷକୁ ଜୀବନଟା ବଞ୍ଚାଇବା ପାଇଁ ଯେତେବେଳେ ମା ବୋଲଗଣ୍ଡ ଚାଲି ଯିବାକୁ ହଉଛୁ ସେତେବେଳେ ଦେହର ଏଇ ସାମାନ୍ୟ ପୀଡ଼ା ତୋ ଆଖିରେ ବଡ଼ ନ ଦିଶିବ କାହିଁକି ? ହେଲେ ସାର ବଡ଼ ଅବସୋସ ରହିଗଲା—ସାରା ଜୀବନଟା ଧରି ମୁଁ କିଛି କରି ପାରିଲି ନାହିଁ ।

ସାବିତ୍ରୀ—କହିଲି ପରା—ବେଶୀ କଥା କୁହନା—କଷ୍ଟ ହେଉ-ଥିବ— ।

ମଦନ—ହଁ କାହିଁକି ବେଶୀ କଥା କହିବି—ଫିରିଙ୍ଗି ଗୁଳିରେ ଆଖି ଦିଟା ଫୁଟି ଯିବାପରେ ସବୁ ହଜିଯାଇ ବସିଛି—ଏଇ କଥା କହିବାର ଅଧିକାର ଟିକକ ମଧ୍ୟ । ଆଚ୍ଛା—ଖୋରଧା ଭୂଇଁରୁ କେତେବାଟ ଟପିଲେଣି ଆମେ ?

ସାବିତ୍ରୀ—ଖୋରଧା ଭୂଇଁ ବୋଧେ ଆମେ ପାର ହୋଇ ଗଲେଣି ବହୁତେଇ ପାହାଡ଼ ଆଉ ଦେଖା ଯାଉନାହିଁ ।

ମଦନ—ରାତ ହେବା ପୂର୍ବରୁ କେଉଁଠି ଗାଁ ଧରି ପାରିବା ?

ସାବିତ୍ରୀ—ମା ବସୁନ୍ଧରେଙ୍କ କାନ୍ଦନ୍ତି —ଅରକ୍ଷିତ ଅଟେ—ଆମକୁ
କିଏ ସାହା ଭରସା ଦେବେନ ।

ସଦନ—ଗାଁରୁ ଏତେ ଲୋକ ଗଲେ ତୁ ଜାଣୁଚୁ ମୁଁ ଅଦୃଶ୍ୟ
ଲୋକଟା ତାହାସାଂଗ ଧରିଥିଲେ ହେଲ ନଥାନ୍ତା ।

ସାବିତ୍ରୀ—ଜୀବନଟନର କିଏ କୁଅଡ଼େ ଯୋବଧା ଘଣ୍ଡ଼ ବୁଝିପାରୁ
ଛନ୍ତି—ଆମକୁ ସବୁଟେ କିଏ ?

( ଗୋଟାଏ ଲୋକ ବୁଲି ଯାଉ ଥିବାର ଲକ୍ଷ କରି ସ୍ତ୍ରୀଙ୍କୁ
ଅଶିଥିବା ବୁଢ଼ା )

ବୁଢ଼ା—ହେ ବାପ ! କିଏ ଯାଉଛ ମତେ ଟିକିଏ ସାଙ୍ଗରେ
ନିଅ ।

ସଦନ—ଆଉ ସାଙ୍ଗରେ ନେବ ?

( ବୁଲିଗଲା )

ସାବିତ୍ରୀ—କୁଆଡ଼େ ଯିବୁ ମାଉସି ?

ବୁଢ଼ା—ତମେ କୁଆଡ଼େ ଯାଉଛ ଲୋ ଝିଅ ଏତେବଡ଼ ବଡ଼ ଲୁହେଲଟା
ହୋଇଗଲା—ଏତେ ଏତେ ଟାଣୁଆ ଟାଣୁଆ ଲୋକ ଗୁଡ଼ାକ
ଟଲି ପଡ଼ିଲେ ଏ ବାଣ୍ଡଟା ଯାହା ନ ମରି ବଂଚିଛି ଅଲେଇଷା
ମତେ ନ ଧରି ମୋ ପୁଅଟାକୁ ଯାହା ଧରିନେଲା—

ସଦନ—ତାହା ତଥା କହୁଛୁ ମାଉସି ?

ବୁଢ଼ା—ସାହାଡ଼ ଗୁଂଫାରେ ଶୋଇଲା ତୁଅଟାକୁ ମୋର, ସାଙ୍ଗରେ
ତାର ହାତ ହତିଅର କିଛୁ ନାହିଁ, ଗୁଡ଼ିଏ ଅଜ୍ଞ ଜଳିଅ ସଭ
ଏକ ଘେରି ଗଲେ—ବୀର ପଣିଅ ଦେଖେଇ ହେଉଛନ୍ତି ।

ସାବିତ୍ରୀ—କିଏ ତାହାକୁ ଘେରି ଗଲା ମାଉସି ?

ବୁଢ଼ା—ସେଇ ଗୁଡ଼ାକ—ବାକ୍‌ସିକୁ ମୋର ଜିତିବାର ଯଦି ଇଚ୍ଛା
ଥିଲା ହାତକୁ ତାର ଢାଲ ଖଣ୍ଡା ବଢ଼େଇ ଦେଇଥାନ୍ତେ ଅଉ

ଯେ ଟି ଗୋଟି ହୋଇ ଆଗରେ ତାର ଗୁଡ ପଡେଇ ଛୁଡ଼ା ହୋଇଥାନ୍ତେ—ତେବେ ଯାଇଁ ଜଣା ପଡ଼ଥାନ୍ତା ଗାର ପଣିଆ—

ପବନ—ବଳ୍‌ସି ସାଆନ୍ତଙ୍କୁ ତା' ହେଲେ ଧର ନେଲେ ମାଙ୍କସି ବଳୁଣେଇ ଏଇସ୍ୱା ଶେଷରେ ତୁ କଲୁ ।

ବୁଢ଼ା—ହଁ ପୁଅକୁ ମୋର ଠାଏ ନେଲେ କୁଆଡ଼େ ନେଲେ କଣ ଭଲେ ଜଏ ବନ୍ଧୁର ?

ସାବଜୀ—ହଜ ମାଙ୍କସି—ଆ—ଦ—ସଂଜ ଅଗରୁ ଗାଁ ଧରବାକୁ ହେଇ ପଶ ?

ବୁଢ଼ା—ସୁଲ—ସୁଲ—( ପଶି ଅସିଲ ବସ୍ତୁଙ୍ଗ )

ବସ୍ତୁଙ୍ଗ—କଏ ? ନାଜ—ପଦ୍ମନ ଗୁବ—ମାଙ୍କସି—ଚାହ୍ନି ? ଭାହନ୍ତ ସାନ୍ତେ—ଏଠିତ ନାହାନ୍ତି—ବାଟରେ ଯାହାକୁ ଦେଖିଲ ତାକୁ ପଗୁଚଲ କେହ୍ନ ତ କହ ପାରୁ ନାହାନ୍ତି, ସାଆନ୍ତେ କେଉଁଠି । ତମେ ଦେଖିଛ ସାନ୍ତେ ମୋର କେଉଁଠି ?

ସାବଜୀ—ବସ୍ତୁର—ସାନ୍ତେ ନାହାନ୍ତି ।

ବସ୍ତୁଙ୍ଗ—ନାହାନ୍ତି ! କିଏ ନେଲ ? କିଏ ନେଲା ସାଆନ୍ତଙ୍କୁ କୁହ—କୁହ କିଏ ନେଲ ?

ବୁଢ଼ା—ପିଚର ସାହାବ ନେଲୁ ଗୋରା ସିପାହୀ ନେଲନ୍ତି—

ବସ୍ତୁଙ୍ଗ—ତେବେ କଣ ସେ କାଳ ଅନ୍ଧାର ଆଜ୍ଞ ଆସିଲା—ନାଁ— ନାଁ—ମୁଁ ଯିବି—ମୁଁ ଯିବି—ସାଆନ୍ତଙ୍କ ପାଖକୁ । (ଯାଉଥିଲା)

ସଦନ—ଭଉଣି ଯାନା—ଯାନା ସେ ଆଡ଼କୁ—ତୋ ମୁଣ୍ଡ କଣ ଖରାପ ହୋଇଛି—ଯେଉଁଟି ଫିରିଙ୍ଗିର ହାଣିବାଠ ଲଟଗାଡ଼ ହେଲଛି—ଯେଉଁଠି କେବେ ଯବନ୍ଦାର ଭାଙ୍ଗି ପିଲ ଭଣ୍ଡିଲ

ନେଇ ଯଉଛଇ ଅସୁରନ୍ତି—ତୁ ସେଇଠିକୁ ଯିବୁ ?

ଫତୁରସ—ମୁଁ ଯିବ ନାହିଁ ? ମୁଁ ଯିବ ନାହିଁ ? କିଏ ଯିବ ? କିଏ ଯିବ ? ସାନ୍ତେ, ସାନ୍ତେ ? (ପ୍ରସ୍ଥାନ)

ସାବଜୀ—ଭତୁର

ବୁଢା—ଥାଉ ତାଙ୍କୁ ଡାକନା—ସେ ଶୁଣିବ ନାହିଁ—ସେ ବାଉଳା ହୋଇ ଯାଇଛି ।

ପଠନ—ସାହ—ଗୁଲ

(ସମସ୍ତେ ଧୀରେ ଧୀରେ ଗୁଲିଲେ )

---

## ୭ମ ଦୃଶ୍ୟ

( ଖୋର୍ଦ୍ଧା ଜଂଗଲର ଗୋଟାଏ ଗୁମ୍ଫାର ଅଗରେ ବକ୍ସିଙ୍କୁ ଇଂରେଜ ସୈନ୍ୟମାନେ ଅସହାୟ ଅବସ୍ଥାରେ ସଜାଇ ଦେଇ ସ୍ୱରପାଖରେ ନଳୀ ଧର ପହରା ଦେଉଛନ୍ତି···ବକ୍ସିଙ୍କ ସମ୍ମୁଖରେ ବୀର ଦର୍ପରେ ଛିଡା ହୋଇଛନ୍ତି ମେଜର ଫ୍ଲେଚର )

ଫ୍ଲେଚର—You know Buxi, why you are here ?

ତୁମେ ଜାଣ ବକ୍ସି ତୁମେ କାହିଁକି ଏଠି ?

ବକ୍ସି—ବିଜୟୀର ଅସ୍ଫାଳନ ଅନ ଦେଖାନା ଫ୍ଲେଚର, ମୁଁ ଜାଣେ ଭାଗ୍ୟର ବିପର୍ଯ୍ୟୟରେ ବକ୍ସି ଆଜି ପରାଜିତ,ଖୋର୍ଦ୍ଧା ଭୂଇଁ ଆଜି ବନ୍ଦୀ । ମୁଁ ଜାଣେ ତୁମେ ଲଣ୍ଡନବାସୀ ଫିରିଙ୍ଗିର ଦଳ;ଶୃଙ୍ଖଳା ନାମରେ ଚଉଦେଶଙ୍କପାରେ ଶୃଙ୍ଖଳ ଦେଇଥିଲ, ଖୋର୍ଦ୍ଧାର ଶେଷ ଉଦ୍ଧୃଷ୍ଟ ଲିଙ୍ଗ ଟିକିକ ଲିଭାଇ ଦେବାପାଇଁ ଆମକୁ ଶିକ

ଅତ୍ୟାଗ୍ରର କରୁ ମୁକ୍ତ କରାଇବା ପଞ୍ଚଦେଶଙ୍କର ସେଇ ଭାଗ୍ୟାକାଶର ଅନ୍ଧକାର ବେଷ୍ଟନୀ ଭିତରେ…।

ଫ୍ଲେଚର—ବଂଶାଗାର ହୁକୁମ ହାମ ଚନ୍ ଭଣ୍ଡବ—ହାମ୍ ଭଂଶାଗାର ନୌକର ଅଛୁ।

ବକ୍ସି—ମୁଁ ଜାଣେ ଏ ଗଣ ଅଂଗ୍ରେଜଙ୍କର ଜନତାର ନେତୃତ୍ୱ ନେଇଥିଲେ ଯେଉଁ ଜନନାୟକମାନେ, ତୁମେ ସେମାନଙ୍କୁ ନିଶ୍ଚିହ୍ନ କରିବାର ଚେଷ୍ଟା କରୁଛ। ସେଇଥିପାଇଁ ଗୋପର ତରୁଣୀକର ସର୍ଦ୍ଦାର ଅଜ୍ଞ ବନ୍ଦୀ କୁଜଙ୍ଗର ନାରାୟଣ ସବମଗ୍ରରୁ ଅନ୍ତ କରିବାର ଚମଦେବ ପଞ୍ଚଯୋଷୀ ଅଙ୍କ ଦ୍ୱିପନ୍ତରର। ମୁଁ ଜାଣେ ଫିରିଙ୍ଗି ଅନ୍ତ ତା.. ସ୍ୱାର୍ଥସାଧନ ପାଇଁ ଦେଶ ଭକ୍ତମାନଙ୍କୁ ଦେଶ ଦ୍ରୋହୀର ଆଖ୍ୟା ଦେଉଛନ୍ତି।

ଫ୍ଲେଚର—But perhaps you do not know one thing ବକ୍ସି ତୁମେ ଗୋଟାଏ କଥା ଜାଣନା—ତୁମଙ୍କୁ ଭଗ୍ନ ହେଲା ପରେ ଜେଲକୁ ପଠା ନ ଯାଇ ଏଠାକୁ ଡାକି ଅଣା ଗଲା।

ବକ୍ସି—ମୁଁ ଜାଣେ ଫ୍ଲେଚର, ଜାଣେ। ତୁମେ ଜଳଦସ୍ୟୁ ବେପାରୀର ଦଳ-ସାହାସ କରି ପାରନା. ସେ ଧା। ବକ୍ସିର ଜୀବନ ଜନତାର ଶକ୍ତି ସାରମ ନେତାକୁ, ସେଥିପାଇଁ ତୁମେ ମନେ ଅହିଂସ ଲୋକ ଲେଚନର ଅନ୍ୟବେଳକୁ ····

ଫ୍ଲେଚର—You are too wise ତୁ ପ ଭାଏ ତୁ—ଠିକ୍, ଗରଦାନ ତୁଙ୍କୁ ଲୋକ ଲୋକେ ନଠାଙ୍କରେ ରଖି ଛଅଶିବ ଗୁଳି ବନ୍ଧୁକରେ ମୁ. ଦି—

ବକ୍ସି—ନିର୍ମମ ଭାବେ ହତ୍ୟା କରୁ ଏଇ ବାଘ ଗୁଳି ବନ୍ଧୁକରେ ଫୋପାଡ଼ି ଦେବ ଆଉ ଲୋକେ ଜାଣିବେ ବକ୍ସିକୁ ଜଙ୍ଗଲରେ ବାଘ ଖାଇ ଗଲା କି ଗୁଳି ଖାଇଗଲା ।

ଫ୍ଲେଚର—That's it that's it ।

ବକ୍ସି—କାରଣ, ବକ୍ସିର ଜୀବନ ଅପେକ୍ଷା ବକ୍ସିର ମୃତ୍ୟୁକୁ ତୁମେ ବେଶୀ ଭୟ କର ।

ଫ୍ଲେଚର—Leave it ସେ କଥା । ଯାଉ ଅଚ୍ଛା ବକ୍ସି ତୁମର ଅନୁତାପ ହୁଏ ନାଁ…

ବକ୍ସି—କାହିଁକି ହେବ ?

ଫ୍ଲେଚର—ତୁମର ଭୟ ହୁଏନାଁ

ବକ୍ସି—ବରଂ ଗର୍ବ ହେଉଛି ।

ଫ୍ଲେଚର—Why why ? କାହିଁକି ତୁମର ଗର୍ବ ହେଉଛି because ତୁମେ ସର୍ବସ୍ୱାନ୍ତ ହୋଇ ଶେଷରେ ଠକା ହେଲ ଆପଟର

ବକ୍ସି—ପ୍ରାଣ ହରାଉଛି ବୋଲି ନୁହେଁ ।

ଫ୍ଲେଚର—ତା ହେଲେ କାହିଁକି ? ତୁମର ପାଇକମାନେ ଅମର ଖଜଣାଖାନା ଲୁଟ କରି ନେଲେ ବୋଲି । ଅମର ବାଣପୁର ଥାନା ପୋଡ଼ି ଏକଶହ ଲୋକଙ୍କୁ ମାରି ଦେଲେ ବୋଲି ?

ବକ୍ସି—ସେଥିପାଇଁ ନୁହେଁ ଫ୍ଲେଚର……ଖୋର୍ଦ୍ଧା ଭୂଇଁର ସେବାପାଇଁ ମୁଁ ମୋର ରକ୍ତ ଦାନ କରୁଛି ବୋଲି । ସେଇ ରକ୍ତ ମୋର ମାଆ ମଥାରେ ଚିରଦିନ ସିନ୍ଦୂର ଗାର ହୋଇ ରହିବ ।

ଫ୍ଲେଚର—Martyr…Martyr. ଶହୀଦ ହୋଇଗଲ ସହୀଦ ।

ବକ୍‌ସି—ମୁଁ ଫ୍ଲେଚର ଏ ପରାଜୟ ପରାଜୟ ନୁହେଁ, ଏ ପରାଜୟ ଅମର ବିଜୟ । ମୁକୁନ୍ଦ ଦେବ ଆଉ ଜଗବନ୍ଧୁର ଜୀବନ ନିରର୍ଥକ ହେବ ନାହିଁ । ସେମାନଙ୍କର ପବିତ୍ର ରକ୍ତବିନ୍ଦୁ ଭାବୀ ବଂଶଧରଙ୍କର ପ୍ରାଣରେ ଅଲକ୍ଷରେ ଆସ୍ତ କରିବ— ତା'ହିଁ ଅମର ବିଜୟ ଫ୍ଲେଚର । ଆଜି ଯୁଏତ ଅନ୍ଧକାର ଆସିଛି । ଦିନେ ହେବ ସୂର୍ଯ୍ୟୋଦୟ । ସେଦିନ ତୁମେ ଅତ୍ୟାଚାରୀ ଫିରିଙ୍ଗିର ..ଏଇ ତୁମର ସମସ୍ତ ଅତ୍ୟାଚାରର ମୂଲ୍ୟ ଚୁକ୍ତାଇ ହୋଇଯିବ—ଏ ଦେଶର ସନ୍ତାନ ସେଦିନ ତୁମକୁ ଏ ଦେଶ ମାଟିରୁ ନିକାଲି ଦେଇ ଲେଖିବ ତାର ନୂତନ ଇତିହାସ ।

ଫ୍ଲେଚର—Oh you become hysterio alright ତୁମର ବେଳ ଶେଷ ହୋଇ ଆସିଲା ତୁମର ଠାକୁରଙ୍କୁ ଡାକ ।

ବକ୍‌ସି—ଠାକୁର ମୋର ଜନନୀ ଜନ୍ମଭୂମି—ସେହି ଜନ୍ମଭୂମିର ଜୟ ହେଉ—( ସେ ତଳକୁ ମୁଣ୍ଡ ପୋତିଲେ—ଅଦୂରରେ ଶୁଣାଗଲା ଏକ ବ୍ୟାଘ୍ର ଗର୍ଜନ )

ଫ୍ଲେଚର—Oh.Tiger—ଟାଇଗର—ବାଘର ଗର୍ଜନ—very near. ଖୁବ୍ ନିକଟ—Soldieres you ,do your job ମୁଁ ଟାଇଗରଟାକୁ ମାରିଦେଇ ଆସେ । ( ସେ ଗୋଟାଏ ବନ୍ଧୁକ ନେଇ ଚାଲିଗଲେ । ବକ୍‌ସି ଖାଲି କହୁଥାନ୍ତି "ଜନ୍ମଭୂମିର ଜୟ ହେଉ" । ତା' ପରେ ଇଂରେଜ ସିପାହୀ-ମାନେ ବକ୍‌ସିଙ୍କୁ ନିଷ୍ଠୁର ଭାବେ ହତ୍ୟାକଲେ—କିନ୍ତୁ ତାଙ୍କର ଶେଷ ପ୍ରାଣବାୟୁ ନିର୍ଗତ ହେବା ପୂର୍ବରୁ ବ୍ୟାଘ୍ରର ଗର୍ଜନ ନିକଟତର ହୋଇଥିବାରୁ ଉଦ୍‌ଭ୍ରାନ୍ତ ହୋଇ ସେ ସ୍ଥାନ ପରିତ୍ୟାଗ କରି ଚାଲିଗଲେ । ପଛ ପଟୁ [illegible] ବକ୍‌ସିଙ୍କର [illegible] ହୋଇ ଆସିଥିଲା । [illegible]

ବକ୍ସୀ—ଶତ୍ରୁର ଅଶ୍ୱାରୂଢ଼ ସୈନ୍ୟେ ମୁଁ ଶାନ୍ତି ଦେବାକୁ ଆସିଛି। ବୃଦ୍ଧ ଅଙ୍ଗରେ ଅସ୍ତ୍ର ପ୍ରଳୟଙ୍କରୀ ତଥାପି ସାନ୍ତ୍ୱେ ଏ ପ୍ରଳୟରେ ମୁଁ ନିଜକୁ ହଜାଇ ଦେଉଛି...ସାନ୍ତ୍ୱେ—ଏ ପ୍ରଳୟର ତାଣ୍ଡବରେ ତୁମେ ମଧ୍ୟ ଭୁଲିଯାଅ ନିଜକୁ ( ବକ୍ସୀଙ୍କ ପାଦ ଟଳମଳ ହୋଇ ଉଠିଲା. ତାଙ୍କ ହାତରୁ ଖସିଲା ହାତର— ହଠାତ୍ ଗୁଳି ଶବ୍ଦ ହେଲା—ବକ୍ସୀ ସେଇ ଗୁଳିର ଆଘାତରେ ତଳକୁ ଢଳି ପଡ଼ିଲେ—ପଶି ଆସିଲେ ମେଜର ଫ୍ଲେଚର )

ଫ୍ଲେଚର—Where are my soldiers ( ସେ ଗୁଳି ଆଡ଼କୁ ଚାହିଁଲେ ଶେଷରେ ବକ୍ସୀଙ୍କୁ ଦେଖି... ) Oh you are here...ଅଚ୍ଛା ତୁମ ପାଇଁ ମୋର ଶେଷ ଉପହାର ଲଗାଇଦି... ବଳେଇ ତାହାର ଅଛି ( ସେ ପାଇଁ ଦେଖିଲେ ବକ୍ସିଙ୍କର ଶେଷବାୟୁ ଉଡ଼ିଯାଇଛି... ) ଦୂରରେ ଶୁଭୁଛି—ଗୋରାର ବ୍ୟାଣ୍ଡ ପାର୍ଟି ..Rule Britania Rule, (ନିଜର ଅଜାଣତରେ ନିଜେ ଅଧୀର ହୋଇ ଉଠିଲେ—କିନ୍ତୁ ବନ୍ଧୁ ଧର୍ମପୁତ୍ରରେ ଗୌରବ ହୋଇଯାଇ ବକ୍ସିଙ୍କୁ. ସାମରିକ ପଦ୍ଧତିରେ ଜଣାଇଲେ ତାଙ୍କର ଶ୍ରଦ୍ଧାର ଅଭିନନ୍ଦନ )

My tribute to you Baxi. Not only to you but for you heroism and love for your mother land. Lastly take my departed salute.

---

ମୁଦ୍ରାକର—ଶ୍ରୀ [illegible] ପ୍ରେସ, କଟକ—୧୯୫୧

# ପରିଶିଷ୍ଟ

ଅନ୍ନପୂର୍ଣ୍ଣା ଥିଏଟର୍ସ ( ବି ) ରେ ଅଭିନୀତ ବିଦ୍ରୋହୀ

**ଜଗବନ୍ଧୁ ଆରମ୍ଭ ରଜନୀ ତା ୫।୬।୧୯୪୯**

**ଭୂମିକାରେ**

ବକ୍ସି ଜଗବନ୍ଧୁ—ଶ୍ରୀ ନଟବର ସେଣ
ମୁକୁନ୍ଦ ଦେବ—ଶ୍ରୀ ଗଣେଶ୍ୱର ରଥ
ଜୟକୃଷ୍ଣ—ଶ୍ରୀ ରାମଚନ୍ଦ୍ର ମାଣିଆ
କର୍ଣ୍ଣେଲ ହାର୍କୋର୍ଟ—ଶ୍ରୀ ଦୁଃଖିଶ୍ୟାମ ସ୍ୱାଇଁ
କ୍ୟାପ୍ଟେନ ଥୋମାସ—ଶ୍ରୀ ନିରଞ୍ଜନ ଶତପଥୀ
ମେଜର ଫ୍ଲେଚର—ମିଷ୍ଟର ସାମୁଏଲ ସାହୁ ( ବାବ )
ଦେୱାନ କୃଷ୍ଣଚନ୍ଦ୍ର—ଶ୍ରୀ ରାମଚନ୍ଦ୍ର ନନ୍ଦ
ଚରଣ ପଟ୍ଟନାୟକ—ଶ୍ରୀ ବୃନ୍ଦାବନ ବେହେରା
ଫତେ ମହମ୍ମଦ—ଶ୍ରୀ କେଶବଚନ୍ଦ୍ର ସ୍ୱାଇଁ
ଜଉର ଦବାଟ—ଶ୍ରୀ ବାଞ୍ଛାନିଧି ଦାସ
ଜନ୍ମଣାଭର—ଶ୍ରୀ ରଘୁନାଥ ପ୍ରଧାନ
ମଦନ—ଶ୍ରୀ ବୈଷ୍ଣବଚରଣ ପଣ୍ଡା
ଘନ—ଶ୍ରୀ ପ୍ରଭାକର ପାଢ଼ୀ
କୁନ୍ତଳା—ଶ୍ରୀ ଦୀନବନ୍ଧୁ ପଣ୍ଡା
ବରକୁ—ଶ୍ରୀ ସତ୍ୟନାରାୟଣ ପାତ୍ର
ଶୁଆର—ଶ୍ରୀ ହରିହର ପଣ୍ଡା
ସିପାହୀ—ଶ୍ରୀ ଦେବପ୍ରସାଦ ଦାସ—ଶ୍ରୀ ଜଗବନ୍ଧୁ
ପ୍ରଯୋଜକ ଓ ଶ୍ରୀ ଇଶ୍ୱରଚନ୍ଦ୍ର ମହାନ୍ତି

ଚନ୍ଦ୍ରଶ୍ରୀ—ଶ୍ରୀମତୀ ଭାନୁମତୀ ଦେବୀ

ରାଣୀ—ଶ୍ରୀମତୀ ଇନ୍ଦୁମତୀ ଦେବୀ

ସାରଥୀ—ଶ୍ରୀମତୀ ବମଳା ଦେବୀ

ବୃନ୍ଦା—ଶ୍ରୀମତୀ ପ୍ରମିଳା ଦେବୀ

ସାଇଡ ଫ୍ରିଅ ଓ ନର୍ତ୍ତକୀ ପଲ୍ଲବ — ଶ୍ରୀମତୀ ବସନ୍ତ କୁମାରୀ, ଶ୍ରୀମତୀ ପୂର୍ଣ୍ଣିମା, ଶ୍ରୀମତୀ ମାଧୁରୀ

—*—

ସ୍ୱାରକ—ଶ୍ରୀ ଗୋବିନ୍ଦଚନ୍ଦ୍ର ନନ୍ଦ

ସାଲକାନାଟ ନିର୍ଦ୍ଦେଶକ—ଶ୍ରୀ ସାର୍ଦ୍ଦୁଳ ସିଂ

ସଂଗୀତ ଓ ସ୍ୱର ଶିଳ୍ପୀ—ଅନ୍ନପୂର୍ଣ୍ଣା ଥିଏଟର୍ସ

ସଂଗୀତ ନିର୍ଦ୍ଦେଶକ—ଶ୍ରୀ ହରିହର ପଣ୍ଡା

ଅବହ ସଂଗୀତ—ଶ୍ରୀ ହରିହର ପଣ୍ଡା
ଶ୍ରୀ କାଶୀନାଥ ମଜୁମଦାର

ମଞ୍ଚଶିଳ୍ପୀ—ବଙ୍କିମ ସରକାର ଆଣ୍ଡ ବ୍ରଦର୍ସ

ମଞ୍ଚସଜ୍ଜା—ଶ୍ରୀ ବୃନ୍ଦାବନ ବେହେରା ଓ
ଶ୍ରୀ ଈଶ୍ୱରଚନ୍ଦ୍ର ମହାନ୍ତି

ରୂପସଜ୍ଜା :— ଶ୍ରୀ ରାଜକିଶୋର ସିଂହ, ଶ୍ରୀ ଉଦୟନାଥ ପଟ୍ଟନାୟକ, ଶ୍ରୀ ବ୍ରଜସୁନ୍ଦର ମିଶ୍ର

ନୃତ୍ୟକଳା—ଶ୍ରୀ କାଶୀନାଥ ସାହୁ, ଶ୍ରୀ ଚାରୁଚନ୍ଦ୍ର ଘୋଷ, ଶ୍ରୀ ଲକ୍ଷ୍ମୀନାରାୟଣ ପାଣି ।

ଡାଇରେକ୍ସନ୍—ମିଷ୍ଟର—ସାମୁଏଲ ସାହୁ ( ବାବୁ )

ସହକାରୀ—ଶ୍ରୀ ନଟବର ସେଣ

---